# ଯଶୋବନ୍ତ ଦାସ

ଡକ୍ଟର ଲାବଣ୍ୟ ନାୟକ



ଓଡ଼ିଶା ସାହିତ୍ୟ ଏକାଡେମୀ

# ଯଶୋବନ୍ତ ଦାସ

ଡକ୍‌ଟର ଲାବଣ୍ୟ ନାୟକ



ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଯଶୋବନ୍ତ ଦାସ

ଲେଖିକା :

ଡକ୍ଟର ଲାବଣ୍ୟ ନାୟକ

ପ୍ରକାଶକ :

ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର-୭୫୧୦୧୪

ମୁଦ୍ରଣ :

ଉତ୍ତମା ପ୍ରେସ୍

ଅରବିନ୍ଦ ନଗର, କଟକ-୧୦

ପ୍ରଥମ ପ୍ରକାଶ : ୧୯୯୩

ମୂଲ୍ୟ : ବାଇଶି ଟଙ୍କା

**YASHOVANTA DASA**

Written by :

**Dr. Labanya Nayak**

Published by :

**Orissa Sahitya Academi**

Bhubaneswar-751014

Printed at :

**Uttama Press**

Aurobindo Nagar, Cuttack-10

First Published : **1993**

Price : **Rupees Twentytwo**

# ଅଗ୍ରଲେଖ

ଓଡ଼ିଆ ସାହିତ୍ୟର ଲବ୍ଧପ୍ରତିଷ୍ଠ ବରେଣ୍ୟ ସାରସ୍ୱତ ସାଧକଙ୍କ ଜୀବନୀ ଓ କୃତି ସଂବଳିତ ମନୋଗ୍ରାଫ୍ ପ୍ରକାଶନ ଓଡ଼ିଶା ସାହିତ୍ୟ ଏକାଡେମୀର ଏକ ଲୋକପ୍ରିୟ ପ୍ରକାଶନ କାର୍ଯ୍ୟକ୍ରମ ରୂପେ ଗୃହୀତ ଏବଂ ଏହି କାର୍ଯ୍ୟକ୍ରମ ଅନୁସାରେ 'ଯଶୋବନ୍ତ ଦାସ' ଶୀର୍ଷକ ପୁସ୍ତକଟି ଏକାଡେମୀ ପକ୍ଷରୁ ପ୍ରକାଶିତ ହେଲା ।

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଇତିହାସରେ ପଞ୍ଚସଖା ଯୁଗକୁ ଓଡ଼ିଆ ସାହିତ୍ୟ ବିକାଶର ସ୍ୱର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଧର୍ମର ମାଧ୍ୟମରେ ହିଁ ଜଗତର ସର୍ବଶ୍ରେଷ୍ଠ ସାହିତ୍ୟ ଆତ୍ମପ୍ରକାଶ କରିଆସିଛି ଏବଂ ସେହି ଭାବଧାରାରେ ଅନୁପ୍ରାଣିତ ପଞ୍ଚସଖା ରାଶିରାଶି ସାହିତ୍ୟ ସୃଷ୍ଟି କରି ଉତ୍କଳର ଧାର୍ମିକ, ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଯାଇଛନ୍ତି । ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ସାଧକ, ଭକ୍ତକବି ଯଶୋବନ୍ତ ଦାସ ତାଙ୍କର ଆଧ୍ୟାତ୍ମିକ ରଚନାବଳୀ ଦ୍ୱାରା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ସୁସମୃଦ୍ଧ କରି ଐକାନ୍ତିକ ସାରସ୍ୱତ ସାଧନା, ସଂସ୍କାରନିଷ୍ଠା ଓ ଉତ୍କଳପ୍ରାଣତାର ପରିଚୟ ଦେଇଯାଇଛନ୍ତି । ସରଳ, ତରଳ ଓ ହୃଦୟସ୍ପର୍ଶୀ ଭାଷା ଓ ଭାବରେ ତାଙ୍କଦ୍ୱାରା ରଚିତ 'ଗୀତ ଗୋବିଚନ୍ଦ୍ର' ଏକ ଅନବଦ୍ୟ ଲୋକପ୍ରିୟ ରଚନା ଯାହା ନାଥଯୋଗୀମାନେ କେନ୍ଦରାର ତାଳେ ତାଳେ ସୁମଧୁର ସ୍ୱରରେ ଗାନକରି ଦ୍ୱାରେ ଦ୍ୱାରେ ବୁଲି ଭିକ୍ଷା କରନ୍ତି । ଯଶୋବନ୍ତଙ୍କ କବିତାର ଛନ୍ଦେ ଛନ୍ଦେ ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥଙ୍କ ମହିମା ପ୍ରସ୍ଫୁଟିତ ହୋଇଅଛି । ଯଥାର୍ଥରେ ସେ ଭକ୍ତକବି ଭାବରେ ଚିରବନ୍ଦନୀୟ ଓ ଚିରସ୍ମରଣୀୟ ।

ଏହି ମନୋଗ୍ରାଫ୍‌ର ଲେଖିକା ପ୍ରାଧ୍ୟାପିକା ଡକ୍ଟର ଲାବଣ୍ୟ ନାୟକ ଉଚ୍ଚକୋଟୀର ଗବେଷଣାତ୍ମକ ନିବନ୍ଧ ଓ ସମାଲୋଚନା ସାହିତ୍ୟ ସୃଷ୍ଟି କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଏହି ପୁସ୍ତକର ପ୍ରକାଶନ ଅବସରରେ ଏକାଡେମୀ ପକ୍ଷରୁ ତାଙ୍କୁ ସାଧୁବାଦ ଜଣାଉଛୁ । ପରିଶେଷରେ ପୁସ୍ତକଟି ପାଠକ-ପାଠିକାଙ୍କ ଦ୍ୱାରା ବିଶେଷ ଆଦୃତ ହେବ ବୋଲି ଆଶା ରଖୁଛୁ ।

ସମ୍ପାଦକ
**ଓଡ଼ିଶା ସାହିତ୍ୟ ଏକାଡେମୀ**

# ବିଷୟ ସୂଚୀ





# ପୃଷ୍ଠଭୂମି

ପ୍ରାଚୀନ ଯୁଗର ବହୁ କବି ଓ ସାହିତ୍ୟିକ ଅଦ୍ୟାବଧି ଲୋକଲୋଚନକୁ ଆସିପାରି ନାହାନ୍ତି । ଯେଉଁମାନେ ସ୍ୱକୀୟ କୃତିଦ୍ୱାରା ପରିଚିତ ହୋଇଛନ୍ତି ସେମାନଙ୍କ ଜୀବନୀ ସଂପର୍କରେ ସଂପୂର୍ଣ୍ଣଭାବରେ ଜାଣିବା ସମ୍ଭବ ହୋଇନାହିଁ । କାରଣ ସେମାନେ ଆତ୍ମଜୀବନୀ ଲେଖି ଯାଇନାହାନ୍ତି କିମ୍ବା ଅନ୍ୟମାନେ ମଧ୍ୟ ସେମାନଙ୍କ ଜୀବନୀ ଲେଖାରେ ଯତ୍ନ କରିନାହାନ୍ତି । ତତ୍କାଳୀନ ଇତିହାସ, ଶିଳାଲେଖ ଇତ୍ୟାଦିରୁ ଯେଉଁ ଯତ୍‌ସାମାନ୍ୟ ସୂଚନାମିଳେ ତାହା ଯଥେଷ୍ଟ ନୁହେଁ ଏବଂ ତହିଁରୁ ସବୁ କବିଙ୍କ ସଂପର୍କରେ ତଥ୍ୟ ମଧ୍ୟ ମିଳେନାହିଁ । କବି ଜୀବନୀ ସମ୍ପର୍କରେ ଜାଣିବାର ମୁଖ୍ୟ ଉପାଦାନ ହେଉଛି କାବ୍ୟ-କବିତାର ପୁଷ୍ପିକା । କବିମାନେ କାବ୍ୟ ବା କବିତାର ପରିସମାପ୍ତି ବେଳେ କିମ୍ବା ସର୍ଗ ଓ ଅଧ୍ୟାୟ ଶେଷରେ ନିଜ ନାମ, ନିଜର ଜାତି, କୁଳ, ପିତା ମାତାଙ୍କର ନାମୋଲ୍ଲେଖ କରୁଥିଲେ । ବେଳେବେଳେ କାବ୍ୟକୃତି ମଧ୍ୟରେ ନିଜର ଶିକ୍ଷା, ଦୀକ୍ଷା, ଗୁରୁ ଜୀବନର ବିଶିଷ୍ଟ ଘଟଣା ଓ ସମସାମୟିକ ସମାଜ ସଂପର୍କରେ ସାମାନ୍ୟ କିଛି ବର୍ଣ୍ଣନା ରହୁଥିଲା । ସମସାମୟିକ କବିଗଣ ପରସ୍ପର ବିଷୟରେ କିଛି ଉଲ୍ଲେଖ କରୁଥିଲେ । ତେଣୁ ସେଥିରୁ କବି ଜୀବନୀର କେତେକ ସୂଚନା ମିଳୁଥିଲା ସିନା ସ୍ୱତନ୍ତ୍ର ଭାବରେ କବି-ଜୀବନୀ ରଚିତ ହୋଇଥିବା ଜଣାଯାଏ ନାହିଁ । ଯେଉଁ କେତୋଟି ଚରିତ ଗ୍ରନ୍ଥ ରଚିତ ହୋଇଥିଲା ସେଗୁଡ଼ିକ ଥିଲା ସନ୍ଥ ଚରିତ ଓ ତାହାର ରଚୟିତା ଥିଲେ ଚରିତ ନାୟକଙ୍କର ଶିଷ୍ୟ ବା ଭକ୍ତ । ଦାର୍ଢ୍ୟତା ଭକ୍ତି, ଶ୍ରୀ ଚୈତନ୍ୟ ଭାଗବତ, ଶ୍ରୀ ଜଗନ୍ନାଥ ଚରିତାମୃତ, ଇତ୍ୟାଦି ଏହି ଶ୍ରେଣୀସ୍ଥ ରଚନା । କିନ୍ତୁ ଯଶୋବନ୍ତ ଦାସଙ୍କ ସଂପର୍କରେ ସେପରି ଉଲ୍ଲେଖଯୋଗ୍ୟ ଜୀବନୀ ବା ଆତ୍ମଜୀବନୀ ରଚିତ ହୋଇଥିବା ଜଣାଯାଏନାହିଁ । ନିଜ ରଚନାରୁ ଯଶୋବନ୍ତଙ୍କ ବିଷୟରେ କିଛି ସୂଚନାମିଳେ । ଏତଦ୍‌ବ୍ୟତୀତ ଯଶୋବନ୍ତଙ୍କ ବିଶିଷ୍ଟ ଶିଷ୍ୟ ଲୋହି ଦାସଙ୍କ 'ଷଷ୍ଠୀ ମେଳା' ଓ ସୁଦର୍ଶନ ଦାସଙ୍କ 'ଚଉରାଶି ଆଜ୍ଞା' ପୁସ୍ତକ ଦୁଇଟି ଏ ଦିଗରେ ସାହାଯ୍ୟକରେ । ଏତଦ୍‌ବ୍ୟତୀତ ଯଶୋବନ୍ତଙ୍କ 'ମନ୍ତ୍ରବୋଲି' 'ଆତ୍ମପରଚେ ଗୀତା' ଏବଂ ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟସଂହିତା' 'ଗୁରୁଭକ୍ତି ଗୀତା'ରୁ ମଧ୍ୟ ଯଶୋବନ୍ତଙ୍କ ଜୀବନୀ ସଂପର୍କରେ କିଛି ଜାଣିବାର ସୁଯୋଗ ମିଳେ । ମାତ୍ର ଶୂନ୍ୟସଂହିତା 'ଓ 'ଗୁରୁଭକ୍ତିଗୀତା

ଅଚ୍ୟୁତାନନ୍ଦଙ୍କ ଭୂମିକାରେ ରଚିତ ହୋଇଥିବାରୁ ଯଶୋବନ୍ତ ଗୌଣ ହୋଇ ପଡ଼ିଛନ୍ତି । ଏହାଛଡ଼ା କେତେକ କିଂବଦନ୍ତୀ, ତଥା ଜନଶ୍ରୁତି ମଧ୍ୟ ଯଶୋବନ୍ତଙ୍କ ସଂପର୍କରେ ପ୍ରଚଳିତ ଥିବା ଜଣାଯାଏ । ଯଶୋବନ୍ତଙ୍କ ଜୀବନୀ ସଂପର୍କୀୟ ଯେତେ ତଥ୍ୟ ମିଳେ ସେ ସମସ୍ତ ପ୍ରାୟତଃ ଇତିହାସ ସମର୍ଥିତ ନୁହେଁ । ତେଣୁ ବେଳେବେଳେ ବିରୋଧାଭାସ ସୃଷ୍ଟି ହୁଏ । ଯେପରି ତାଙ୍କର ଜନ୍ମ ସମୟ ନେଇ ବିଭିନ୍ନ ଗବେଷକ ଓ ସମାଲୋଚକ ଭିନ୍ନ ଭିନ୍ନ ମତପୋଷଣକରିଥାନ୍ତି । ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତି ଯଶୋବନ୍ତଙ୍କ ଜନ୍ମ ସମୟକୁ ଖ୍ରୀ ୧୪୯୫ରୁ ଖ୍ରୀ ୧୫୦୦ ମଧ୍ୟରେ ସ୍ଥିରକରିଥିବା ବେଳେ ପଣ୍ଡିତ ସ୍ୱର୍ଗତ ସୂର୍ଯ୍ୟନାରାୟଣ ଦାଶ, ଅଚ୍ୟୁତାନନ୍ଦଙ୍କ ରଚିତ ଉଦୟ କାହାଣୀ ଉପରେ ନିର୍ଭରକରି ଯଶୋବନ୍ତ ଖ୍ରୀ ୧୪୮୭ରେ ଜନ୍ମ ହୋଇଛନ୍ତି ବୋଲି କହନ୍ତି । ଉଦୟ କାହାଣୀରେ ବର୍ଣ୍ଣନା ହୋଇଛି—

"ଚନ୍ଦ୍ର ସତର ପକ୍ଷ ପୁର ଯେବେ, ଅନନ୍ତ ଶିଶୁ ଜନମିଛି ତେବେ ।
ତା'ର ସଙ୍ଗେ ଯେବେ ଭୁଜ ମିଶିଲା, ଜଗନ୍ନାଥ ଦାସ ଉଦୟ ହେଲା ।
ସେହି ଅଙ୍କେ ଯଶୋବନ୍ତଟି ଜାତ, ବଳରାମ ଗୁରୁ ପୂର୍ବେ ଉଦିତ ।"

ଅଙ୍କ କଷି ଗଣନାକରି ସୂର୍ଯ୍ୟନାରାୟଣ ଦାଶ ସ୍ଥିର କରିଛନ୍ତି ଯେ ଜଗନ୍ନାଥ ଓ ଯଶୋବନ୍ତ ଖ୍ରୀ ୧୪୮୭ରେ ଜନ୍ମ ଗ୍ରହଣକରିଥିଲେ । କିନ୍ତୁ ସୁଦର୍ଶନ ଦାସଙ୍କ ରଚିତ 'ଚଉରାଶି ଆଜ୍ଞା' ପୁସ୍ତକର ବର୍ଣ୍ଣନାକୁ ଲକ୍ଷ୍ୟକରି କେତେକ ସମାଲୋଚକ ଯଶୋବନ୍ତଙ୍କ ତିରୋଧାନ ସମୟକୁ ଖ୍ରୀ ୧୬୧୨ ବୋଲି ସ୍ଥିରକରିଛନ୍ତି । କବି ସୁଦର୍ଶନ ଦାସ ନିଜକୁ ଅଠଗଡ଼ପତି ହରିଚରଣ ବଳିଆରସିଂହଙ୍କ ଅଷ୍ଟମପୁରୁଷର ବ୍ୟକ୍ତି ବୋଲି କହିଛନ୍ତି । ଯଶୋବନ୍ତଙ୍କ ତିରୋଧାନର ୭ ବର୍ଷପରେ ହରିଚରଣ ବଳିଆର ସିଂହ ଅଠଗଡ଼ର ଶାସନକର୍ତ୍ତା ହେଲେ । ଆଠ ପୁରୁଷକୁ କବି ହିସାବକରି ଦୁଇଶହ ବର୍ଷ ପଛକୁ ଫେରିଯାଇ ଯଶୋବନ୍ତଙ୍କ ଜନ୍ମକାଳକୁ ଖ୍ରୀ ୧୫୧୦ ମଧ୍ୟରେ ସୀମାବଦ୍ଧ ରଖିଛନ୍ତି ଓ ଅନୁମାନ ଉପରେ ନିର୍ଭରକରି ଖ୍ରୀ ୧୪୭୦ ତାଙ୍କ ଜନ୍ମ ସମୟ ବୋଲି ସ୍ଥିରକରିଛନ୍ତି । ଏହିମତ କେତେଦୂର ଠିକ୍ ତାହା ବିଚାର ସାପେକ୍ଷ । ଆଠ ପୁରୁଷ ଯେ ଠିକ ଦୁଇଶହ ବର୍ଷ ହେବ ଏପରି ସିଦ୍ଧାନ୍ତ ଗ୍ରହଣକରାଯାଇ ପାରେ କି ? ପୁଣି ଖ୍ରୀ ୧୫୦୯ ବେଳକୁ ଶ୍ରୀ ଚୈତନ୍ୟ ଓଡ଼ିଶା ଆଗମନ କରିଥିଲେ ଓ ପଞ୍ଚସଖାଙ୍କ ସହିତ କିଛି ବର୍ଷ ଲୀଳା ଖେଳା କରିଥିଲେ । ଚୈତନ୍ୟଙ୍କ ଆଗମନର ବର୍ଷକ ମଧ୍ୟରେ ଯଶୋବନ୍ତ ଦେହତ୍ୟାଗ କରିଥିବା ସମ୍ବାଦ ଅନ୍ୟ କୌଣସି ଗ୍ରନ୍ଥରୁ ସୂଚନା ମିଳେନାହିଁ । ସେହିପରି ପରବର୍ତ୍ତୀ କାଳରେ କେତେଜଣ ସମାଲୋଚକ ପଞ୍ଚସଖାଙ୍କୁ ପୂରମୂର ଅଷ୍ଟାଦଶ ଶତାବ୍ଦୀର କବି ବୋଲି କହିଛନ୍ତି । ନିର୍ଦ୍ଦିଷ୍ଟ ଭାବରେ କବିମାନଙ୍କର ଜନ୍ମତାରିଖର ଉଲ୍ଲେଖ ନଥିବାରୁ ସବୁମତ ପ୍ରାୟ ଅନୁମାନ ଉପରେ ପର୍ଯ୍ୟବସିତ । ତଥାପି ଉଦୟ କାହାଣୀରେ ବର୍ଣ୍ଣିତ ଗଣନା

ଉପରେ ନିର୍ଭରକରି ବହୁ ସମାଲୋଚକ ଯଶୋବନ୍ତଙ୍କ ଜନ୍ମ ସମୟକୁ ଖ୍ରୀ ୧୪୮୭ ଭାବରେ ଗ୍ରହଣକରିଛନ୍ତି ।

ଜୀବନୀ :—ମୋଟାମୋଟି ଭାବରେ ପଞ୍ଚସଖାଙ୍କୁ ତତ୍କାଳୀନ ଗଜପତି ରାଜା ପ୍ରତାପରୁଦ୍ରଦେବଙ୍କର ସମସାମୟିକ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର କବି ଭାବରେ ଗ୍ରହଣ କରାଯାଇଛି । ଏହି ପଞ୍ଚସଖାଙ୍କ ମଧ୍ୟରେ ଅଚ୍ୟୁତାନନ୍ଦ ଥିଲେ ବୟୋଜ୍ୟେଷ୍ଠ ଓ ସେ ଖ୍ରୀ ୧୪୮୦ରେ ଜନ୍ମଗ୍ରହଣ କରିଥିଲେ । ଅନ୍ୟ ସଖାଗଣ ମଧ୍ୟ ସେହି ପାଖାପାଖି ସମୟରେ ଜନ୍ମଲାଭ କରିଥିବା ଜଣାଯାଏ । ପୂର୍ବରୁ ଉଲ୍ଲେଖଥିବା କେତେକ ଗ୍ରନ୍ଥରେ ବର୍ଣ୍ଣିତ ବିଷୟ ଉପରେ ନିର୍ଭରକରି ଯଶୋବନ୍ତଙ୍କ ଜୀବନୀ ଅନୁଧ୍ୟାନ କରାଯାଇପାରେ । ଯଶୋବନ୍ତ ଗୋସାଇଁଙ୍କ 'ମନ୍ତ୍ରବୋଲି' ପୁସ୍ତକର ପରିସମାପ୍ତିରେ କବି ଉଲ୍ଲେଖକରିଛନ୍ତି ଯେ ସେ ଅଡ଼ଙ୍ଗରେ କ୍ଷତ୍ରିୟ କୁଳରେ ଜାତ ଓ ତାଙ୍କ ପିତାଙ୍କର ନାମ ବଳଭଦ୍ର । * ଯଶୋବନ୍ତଙ୍କର ଜନ୍ମସ୍ଥଳୀ, ଜଗତ୍ସିଂହପୁର ନିକଟସ୍ଥ ଅଡ଼ଙ୍ଗ ଗ୍ରାମ । ଏବେ ମଧ୍ୟ ଯଶୋବନ୍ତଙ୍କ ମଠ ଓ ସମାଧିସ୍ଥଳ ବିଦ୍ୟମାନ ଥିବାରୁ ଏହି ବର୍ଣ୍ଣନାର ସତ୍ୟତାକୁ ନିଃସନ୍ଦେହରେ ଗ୍ରହଣ କରାଯାଇପାରେ । ଲୋହି ଦାସ, ଯଶୋବନ୍ତଙ୍କର ଜଣେ ବିଶିଷ୍ଟ ଶିଷ୍ୟ । ତାଙ୍କ ରଚିତ ଷଷ୍ଠୀମେଳାକୁ ଓଡ଼ିଆ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ପୁସ୍ତକ ଭାବରେ ଗ୍ରହଣ କରାଯାଇପାରେ । ଏଥିରେ ଅନ୍ୟାନ୍ୟ ଗ୍ରନ୍ଥ ରଚନାରୂପୀ ବୈଷ୍ଣବୀୟ ତତ୍ତ୍ୱ, ବ୍ରହ୍ମଜ୍ଞାନ ଓ ଆଗତ ଭବିଷ୍ୟତର କଥା ରହିବା ସହିତ ଷଷ୍ଠୀ ମେଳାର ବୃତ୍ତାନ୍ତ ଏବଂ ପଞ୍ଚସଖାଙ୍କ ଓଡ଼ିଶାର କେତେକ ତୀର୍ଥସ୍ଥାନ ଭ୍ରମଣର ବର୍ଣ୍ଣନା ରହିଛି । ମାର୍ଗଶିର ମାସ ଶୁକ୍ଳପକ୍ଷ ଓଢ଼ଣ ଷଷ୍ଠୀ ମେଳା ଦିବସରେ ଯଶୋବନ୍ତ ଦାସ ଦେହତ୍ୟାଗ କରିଥିଲେ । ମହାପୁରୁଷଙ୍କ ସ୍ମରଣାର୍ଥେ ଏହିଦିନ 'ଏକ' ମେଳା ଅଦ୍ୟାବଧି ଅନୁଷ୍ଠିତ ହୋଇଆସୁଛି । ଏହିଦିନ ବୈଦିକ ରୀତିରେ ଶ୍ରାଦ୍ଧୋତ୍ସବ ପାଳିତହୁଏ । ଅଡ଼ଙ୍ଗ ନାଇଲୋ ଗ୍ରାମବାସୀଙ୍କ ପକ୍ଷରୁ ଗେଣ୍ଡୁଫୁଲ ଓ ନଡ଼ିଆ ଖରିକା କାଠିରେ ତିଆରି ଏକ ସୁରମ୍ୟ ମୁକୁଟ ଯଶୋବନ୍ତଙ୍କ ଗାଦି (ସମାଧି)ରେ ଅର୍ପିତହୁଏ । ଏହି ମୁକୁଟଟି ଶ୍ରୀ ଜଗନ୍ନାଥଙ୍କ ଟାହିଆପରି ଦେଖିବାକୁ । ଏହାକୁ ଗ୍ରାମବାସୀମାନେ 'ଚୂଳ' ବୋଲି କହନ୍ତି । ଠିକ୍ ସେହିପରି ଅନ୍ୟ ଏକ 'ଚୂଳ' ଯଶୋବନ୍ତଙ୍କ ଶ୍ୱଶୁରଘର ଗ୍ରାମ ଅଡଙ୍ଗଗଡ଼ବାସୀଙ୍କଦ୍ୱାରା ନିର୍ମିତହୋଇ ତାଙ୍କଠାରେ

* କ୍ଷତ୍ରିକୁଳରେ ଜାତ ଯେ ମୋହର, ଅଡ଼ଙ୍ଗ ସ୍ଥଳରେ ଅଟଇ ଘର ।
ପିତାର ନାମ ବଳଭଦ୍ର ଶୁଣ, ମନ୍ତ୍ରବୋଲି କହେ ଯଶୋବନ୍ତ ପୁଣ ।
ମୁଁ ଯଶୋବନ୍ତ କ୍ଷତ୍ରିକୁଳେ ଜାତ, ବେଦକୁ ପଢିନାହିଁ ନୋହି ପଣ୍ଡିତ ।
ପ୍ରଭୁ ଆଜ୍ଞାରେ ମନ୍ତ୍ରବୋଲି କହି, ବ୍ରହ୍ମାଣ୍ଡର ଯେଉଁ ପଦ ଧ୍ୟାଇ ।
ଯଶୋବନ୍ତ ଦାସ ଗୀତରେ ଗାଇ, ନ ଦେଖି ଦେଖିଲି ବନ୍ଧୁଆ ବାଇ ।

ଅର୍ପଣକରାଯାଏ । ବୁଲିଛି ତୂଲ ଆସିବାବେଳେ ଝାଞ୍ଜ ମୃଦଙ୍ଗ ଘଣ୍ଟ ଘଣ୍ଟା ଇତ୍ୟାଦି ବାଦ୍ୟ ଧ୍ୱନିରେ ଗ୍ରାମ ଦାଣ୍ଡ ନିନାଦିତ ହୋଇଉଠେ । ଏହାକୁ ଦେଖିବାପାଇଁ ଲୋକେ ପରମ ସୌଭାଗ୍ୟବୋଲି ମନେକରନ୍ତି ଓ ଏଥିପାଇଁ ବହୁ ଜନସମାଗମ ହୋଇଥାଏ । ଗଡ଼ରେ ମଧ୍ୟ ଯଶୋବନ୍ତ ଗୋସାଇଁଙ୍କର ଗୋଟିଏ ଗାଦି ଅଛି । ଶୁଣାଯାଏ ଗଡ଼ର ତତ୍କାଳୀନ ରାଣୀ, ଯଶୋବନ୍ତଙ୍କ ଗାଦି ବା ସମାଧି ଦର୍ଶନକରିବାପାଇଁ ପ୍ରତ୍ୟହ ଆସୁଥିଲେ । ମାତ୍ର ବାର୍ଦ୍ଧକ୍ୟ ଅବସ୍ଥା ଆଗତ ହେବାରୁ ପ୍ରତ୍ୟେକ ଦିନ ଅତିଙ୍ଗ ନାଇରେ ଆସି ଗାଦି ଦର୍ଶନକରିବାର ସାମର୍ଥ୍ୟ ହରାଇଲେ । ତାଂକପାଇଁ କଣୋବନ୍ତଂକର ଆଉ ଗୋଟିଏ ଲ୍ରେଟିଆ ଗାଦି ନିର୍ମିତହେଲା । ତାହା ମଧ୍ୟ ପ୍ରତ୍ୟେକ ଦିନ ପୂଜା ହୁଏ । ଷଷ୍ଠୀମେଳା ଗ୍ରନ୍ଥିରେ ଏହି ମେଳାର ବିଧିବିଧାନ ଓ ତାତ୍ପର୍ଯ୍ୟ ବିଷୟରେ କିଛି ବର୍ଣ୍ଣନା ହୋଇଛି । ଏତଦ୍‌ବ୍ୟତୀତ ଏହାକୁ ଏକ ଭ୍ରମଣ କାହାଣୀ ଭାବରେ ଗ୍ରହଣ କରାଯାଇ-ପାରେ । ସମସାମୟିକ ସାହିତ୍ୟରେ ପର୍ଯ୍ୟଟନ ଉପରେ ବିଧିବଦ୍ଧ ଭାବରେ ସାହିତ୍ୟ ରଚିତ ହେଉଛି ଓ ତାହା ଭ୍ରମଣ କାହାଣୀ ବା ପର୍ଯ୍ୟଟନ ସାହିତ୍ୟ ରୂପେ ସ୍ୱୀକୃତି ଲାଭ କଲାଣି । ପ୍ରାଚୀନ ଯୁଗର ସାଧୁ ସନ୍ଥଙ୍କ ରଚନାରେ ଭ୍ରମଣ ବୃତ୍ତାନ୍ତ ସ୍ଥାନ ପାଇଥିବା ଦୃଷ୍ଟିରୁ ଏହାର ଗୁରୁତ୍ୱ ଉପଲବ୍ଧି କରିହୁଏ । ଏହା ୧୦୩୮ ପଦ ବିଶିଷ୍ଟ ଓ ଏଥିରେ ଦ୍ୱାଦଶଟି ଛାନ୍ଦ ରହିଛି । ଏ ସମ୍ପର୍କରେ ଗ୍ରନ୍ଥ ଶେଷରେ କବି ଉଲ୍ଲେଖ କରିଛନ୍ତି, "ଇତି ଷଷ୍ଠୀମେଳା ଆଖ୍ୟାନ ଦ୍ୱାଦଶ ଛାନ୍ଦ । ଯଶୋବନ୍ତ ଲୋହି ପ୍ରସ୍ତାବେ ରଘୁ ତଂପତି ଜ୍ଞାନ ପ୍ରଶ୍ନେ ଏକାଦଶ ଶିଷ୍ୟ ମିଳିତ ତୀର୍ଥ ଭ୍ରମଣେ ରଚିତ । ଶ୍ରୀ ଶୁଭମସ୍ତୁ ।" ପୁରୀ ହାତି ଲହଡ଼ି ମଠରୁ ଲେଖାହୋଇ ତାଳପତ୍ର ପୋଥି ଆସିଥିଲା । ଯଶୋବନ୍ତ ଶିଷ୍ୟମାନଙ୍କ ସହ ନୀଳାଚଳ ଗମନ କରିଥିଲେ ଓ ବାଟରେ ଅଳକା ନଦୀ, ଧାନକୁଦ, ଶିଶୁ ଅନନ୍ତଙ୍କ ଆଶ୍ରମ, ବାଙ୍କି ମୁହାଣ, ଜଗନ୍ନାଥ ଦାସଙ୍କ ଆଶ୍ରମ, ଅଚ୍ୟୁତାନନ୍ଦଙ୍କ ଆଶ୍ରମ, ବିରଜାପୀଠ କୁଣ୍ଡୀନଗର, ସୁବର୍ଣ୍ଣଗିରି ଓ ବାରବାଟୀ ପ୍ରଭୃତି ଐତିହାସିକ ଓ ଆଧ୍ୟାତ୍ମିକ ସ୍ଥଳୀମାନ ଦର୍ଶନ କରିଛନ୍ତି । ବର୍ଣ୍ଣନା ପ୍ରସଙ୍ଗରେ ଭକ୍ତ ଲୋହି ଦାସ ତାଙ୍କ ଗୁରୁ ଯଶୋବନ୍ତ ଦାସଙ୍କ ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି ତହିଁରୁ ତାଙ୍କ ଜୀବନୀ ଅନୁଧ୍ୟାନ କରାଯାଇ-ପାରେ । * ପିତା, ମାତା, ଜାତି ଓ ଜନ୍ମସ୍ଥାନ ସମ୍ପର୍କରେ ଏ ଗ୍ରନ୍ଥରୁ ସୂଚନାମିଳେ । ତାଙ୍କର ବଂଶ ପରମ୍ପରା ସମ୍ପର୍କରେ 'ଚଉତିଶି ଆଙ୍କ'ରେ ଏହିପରି ଉଲ୍ଲେଖ ଅଛି ।

---

* ଲୋହି କହନ୍ତି ଶୁଣ ହୋ ବାଉଳ, ସ୍ୱାମୀ ଜନ୍ମସ୍ଥାନ ଦେଖିବା ଚାଲ ।
ପିତାମାତାଙ୍କ ନାମ ଅଟେ କିସ, ବୁଝାଇ କୁହ ଆହେ ଲୋହି ଦାସ ।
ପିତାଙ୍କ ନାମ ବଳଭଦ୍ର ଜାଣ, ମାତାଙ୍କ ନାମ ରେଖାଦେବୀ ପୁଣ ।
କ୍ଷତ୍ରିୟକୁଳେ ଜନମ ହୋଇଲେ, ନନ୍ଦୀ ଗ୍ରାମରେ ନାନା ଲୀଳା କଲେ ।"

(ଷଷ୍ଠୀମେଳା)

ଭଗବାନ ମଲ୍ଲ - ଦୁର୍ଲଭ ମଲ୍ଲ—ନିରଞ୍ଜନ ମଲ୍ଲ— ପୁରୁଷୋତ୍ତମ ମଲ୍ଲ—ନନ୍ଦ ମଲ୍ଲ—ବଳଭଦ୍ର ମଲ୍ଲ – ଯଶୋବନ୍ତ ଓ ବୈଷ୍ଣବ । ଏ ସମସ୍ତ ବର୍ଣ୍ଣନାରୁ ଜଣାଯାଏ ଯଶୋବନ୍ତଙ୍କ ପିତାଙ୍କ ନାମ ବଳଭଦ୍ର ମଲ୍ଲ ଓ ମାତାଙ୍କ ନାମ ରେଖାଦେବୀ ଅଟେ । ସେ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରିଥିଲେ । ସେ ବିଷୟରେ ଯଶୋବନ୍ତ 'ଆତ୍ମ ପରଚେ ଗୀତା'ରେ ଉଲ୍ଲେଖକରିଛନ୍ତି—

"କ୍ଷତ୍ରିକୁଳେ ମୁହିଁ ଜନମ ଅବା, ଶ୍ରୀ ଜଗନ୍ନାଥ ମୋ ଯେଜନ୍ତି ସେବା ।"
(ଆତ୍ମ ପରଚେ ଗୀତା—୨୨୬ ପଦ)

କବି ସୁଦର୍ଶନ ଦାସ ପଞ୍ଚସଖାଙ୍କ ପ୍ରସଙ୍ଗରେ 'ଚଉରାଶି ଆଜ୍ଞା'ରେ ମଧ୍ୟ ଯଶୋବନ୍ତ କ୍ଷତ୍ରିୟ କୁଳରେ ଜନ୍ମଲାଭ କରିଥିବା ବିଷୟ ଉଲ୍ଲେଖକରିଛନ୍ତି ।

"ମୁଁ ଯଶୋବନ୍ତ କ୍ଷତ୍ରିକୁଳେ, ଜନମ ହୋଇଅଛୁ ଭଲେ ।"

ତେଣୁ ଯଶୋବନ୍ତ କ୍ଷତ୍ରିୟ କୁଳରେ ଜାତ ହୋଇଥିବାରେ କୌଣସି ସନ୍ଦେହ ନାହିଁ । ତାଙ୍କର ପିତା ତତ୍କାଳୀନ କୁଜଙ୍ଗ ରାଜାଙ୍କ ଅଧୀନରେ ସିପାହୀ କାର୍ଯ୍ୟ କରୁଥିଲେ ବୋଲି କିଂବଦନ୍ତୀ ପ୍ରଚଳିତ ଅଛି । କିନ୍ତୁ ଉଚ୍ଚ ହୃଦୟବୃତ୍ତି ଯୋଗୁଁ ସେ ଅତିଥି, ବ୍ରାହ୍ମଣ, ସାଧୁ ସନ୍ଥ ସେବା କରୁଥିଲେ ଓ ସନ୍ଥ ଅନୁଷ୍ଠାନମାନଙ୍କରେ ଯୋଗ ଦେଉଥିଲେ । ମାତା ରେଖାଦେବୀ ମଧ୍ୟ ପତିସେବା ଓ ସାଧୁ ସେବାରେ ମନୋନିବେଶ କରୁଥିଲେ । ପିତା ମାତାଙ୍କ ଗୁଣ, ପୁତ୍ର ଯଶୋବନ୍ତଙ୍କଠାରେ ପ୍ରତିଫଳିତ ହୋଇଥିଲା । ଦ୍ୱାଦଶ ବର୍ଷରୁ ସେ ଗୃହ ସଂସାର, ପିତା ମାତା, ଆତ୍ମୀୟ ସ୍ୱଜନ ପ୍ରତି ଉଦାସୀନ ଥିଲେ । ତୀର୍ଥଭ୍ରମଣ ଓ ଧର୍ମ ଆଚରଣ ପ୍ରତି ଅଧିକ ଆକୃଷ୍ଟ ହେଉଥିଲେ । ସମ୍ଭବତଃ ଏହି ଅବସରରେ ସେ ବହୁ ସମ୍ପ୍ରଦାୟର ସାଧୁ ସନ୍ଥଙ୍କର ସାନିଧ୍ୟ ଲାଭକରି ଆପଣା ଧର୍ମବିଶ୍ୱାସକୁ ଅଧିକ ଦୃଢ଼ କରିଥିଲେ ଓ ଯୋଗ ମାଧ୍ୟମରେ ଅଲୌକିକ କ୍ଷମତା ଲାଭକରିଥିଲେ । ତୀର୍ଥ ପର୍ଯ୍ୟଟନ ପରେ ସେ ଦୀକ୍ଷା ଗ୍ରହଣକରିଥିଲେ ଓ ଜଣେ ପରମ ଆଧ୍ୟାତ୍ମିକ ପୁରୁଷ ଭାବରେ ବହୁ ପ୍ରଶଂସା ଓ ଖ୍ୟାତି ଅର୍ଜନକରିଥିଲେ ।

ସେ ଅଡ଼ଙ୍ଗ ଗଡ଼ର ଶାସକ ରଘୁରାମ ଚମ୍ପତିଙ୍କ ଭଗ୍ନୀ ଅଞ୍ଜନାଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ ହୋଇଥିଲେ । ରଘୁରାମ ଓ ଯଶୋବନ୍ତଙ୍କ ମଧ୍ୟରେ ବନ୍ଧୁତା ଥିଲା ଏବଂ ରଘୁରାମ ଯଶୋବନ୍ତଙ୍କ ଆଧ୍ୟାତ୍ମିକ ଶକ୍ତିଦ୍ୱାରା ପ୍ରୀତହୋଇ ଭଉଣୀକୁ ଯଶୋବନ୍ତଙ୍କ ହସ୍ତରେ ସମର୍ପଣ କରିଥିବା ମନେହୁଏ । ଯଶୋବନ୍ତଙ୍କ ଆଧ୍ୟାତ୍ମିକ ଶକ୍ତିରେ ସନ୍ତୁଷ୍ଟହୋଇ ରଘୁରାମ ଓ ତାହାପରେ ତାଙ୍କର ପତ୍ନୀ ତିଲୋତ୍ତମା ଯଶୋବନ୍ତଙ୍କର ଶିଷ୍ୟତ୍ୱ ଗ୍ରହଣକଲେ । ଯଶୋବନ୍ତଙ୍କର ଆର୍ଥିକ ସ୍ୱଚ୍ଛଳତା ନ ଥିଲା । ତେଣୁ ରଘୁରାମ ଯଶୋବନ୍ତଙ୍କ ନିମନ୍ତେ ଏକ ମଠ ନିର୍ମାଣ କରାଇଥିଲେ ଓ ତାହାର

ପରିଚାଳନା ଲାଗି କିଛି ଜମିବାଡ଼ିର ମଧ୍ୟ ବ୍ୟବସ୍ଥା କରାଇଥିଲେ 'ଷଷ୍ଠୀମେଳା' ପୁସ୍ତକରେ ଏ ସଂପର୍କରେ ବର୍ଣ୍ଣନାକରାଯାଇଛି—

"ଅଠ ଅଲସୁଆ ବନ୍ତଆ ଦାସ, ଦନ ବସାଇ ରଘୁରାମ ପାଶ ।
କେବଳ ମୋର ହରିନାମେ ଆଶ, ସ୍ୱବେ ଭଣିଲେ ଯଶୋବନ୍ତ ଦାସ ॥"
(୧୬-୧୭ପଦ)

ତାଙ୍କର କୌଣସି ରୋଜଗାର ନଥିବା ଓ ରଘୁରାମଙ୍କ ସାହାଯ୍ୟରେ କାଳାତିପାତ କରୁଥିବା ଉପରୋକ୍ତ ବର୍ଣ୍ଣନାରୁ ସୂଚିତ ହୁଏ ।

ଯଶୋବନ୍ତ ଜଣେ ସିଦ୍ଧ ସାଧକ ଥିଲେ । ସେହି ଗ୍ରାମରେ ଅବସ୍ଥିତ ଏକ ବିରାଟ ବଟବୃକ୍ଷ ତଳେ ସେ ଧ୍ୟାନରତ ରହି ସିଦ୍ଧି ଲାଭକରିଥିଲେ । ଅଦ୍ୟାବଧି ସେ ବୃକ୍ଷ ବିଦ୍ୟମାନ ରହିଛି । ଜ୍ଞାନସିଦ୍ଧ ଯଶୋବନ୍ତ ବହୁ ଅଲୌକିକ ଘଟଣା ଘଟାଇଥିବା ଜଣାଯାଏ । ସେ ସବୁ ପ୍ରାୟତଃ ଜନଶ୍ରୁତି ଓ କିଂବଦନ୍ତୀ ଉପରେ ଆଧାରିତ ।

**କିଂବଦନ୍ତୀ : ଅଲୌକିକତା ସଂପର୍କରେ—**

କେତେକ ପୁସ୍ତକରେ ତାଙ୍କ ଅଲୌକିକ ଶକ୍ତି ସଂପର୍କରେ ବର୍ଣ୍ଣନା ହୋଇଥିବା ଦେଖାଯାଏ । ଯଶୋବନ୍ତଙ୍କ ଜୀବନୀ ସଂପର୍କରେ ଜାଣିବାପାଇଁ ତାଙ୍କ ଶିଷ୍ୟ ସୁଦର୍ଶନ ଦାସଙ୍କଦ୍ୱାରା ରଚିତ 'ଚଉରାଶି ଆଜ୍ଞା' ଏକ ଉତ୍କୃଷ୍ଟ ପୁସ୍ତକ । ଏହା ୮୪ ବଖାଣ ବା ଅଧ୍ୟାୟରେ ରଚିତ ଏକ ବିରାଟ ଗ୍ରନ୍ଥ । ଏଥିରେ ଏକ ହଜାର ଏକ ଶହ ଶତୃିଂଶ ପଦ ସନ୍ନିବେଶିତ ହୋଇଥିବା ଜଣାଯାଏ । କାରଣ ଗ୍ରନ୍ଥ ଶେଷରେ କବି ଉଲ୍ଲେଖ କରିଛନ୍ତି—

"ଦଶ ହଜାର ଶତେ ପୁଣ, ଶତୃିଂଶ ପଦେ ସମ୍ପୂର୍ଣ୍ଣ ।
କଲି ଯେ ସୁଦର୍ଶନ ଦାସ, ଗୁରୁ ମହିମା ପରକାଶ ।" (୮୪ ବଖାଣ)

ଧାନଚୋରି ପ୍ରସଙ୍ଗରେ ଉଲ୍ଲେଖ ଅଛି, ଯଶୋବନ୍ତ ଥରେ ଧାନ ଚୋରି କରିବାକୁ ଉଦ୍ୟତହୋଇଲେ । କାରଣ ସେ କେତେକ ସମୟପାଇଁ ଗ୍ରାମ କୋଟୁଆଲ କାର୍ଯ୍ୟ କରୁଥିଲେ । ସେହି ସମୟରେ ଥରେ ଦେଶରେ ଦୁର୍ଭିକ୍ଷ ପଡ଼ିଥିଲା । ଶସ୍ୟହାନି ଘଟିଥିବାବେଳେ ଯଶୋବନ୍ତଙ୍କ ପତ୍ନୀ ପାୟସାନ୍ନ ଭୋଜନ କରିବାର ଇଚ୍ଛାପ୍ରକାଶ କରିବାରୁ ଯଶୋବନ୍ତ ଏକ କୃଷକର ଧାନ କିଆରିରେ ପ୍ରବେଶକରି ଧାନ ଚୋରି କରିବାର ପ୍ରସ୍ତାବକଲେ । ଦାଆ ଧରି ଧାନ ଗଛ କାଟୁଥିବାବେଳେ ଗଛ କଟା ଶବ୍ଦ ଭିତରେ ରାମ ନାମ ଶବ୍ଦ ଶୁଣିବାକୁ ମିଳିଲା । ତାଙ୍କ ମନରେ ପ୍ରତିକ୍ରିୟା ଦେଖାଦେଲା । ସେ ଆଉ ଅଧିକ ଧାନ କାଟି ପାରିଲେ ନାହିଁ, ବରଂ ରାମନାମ ଧ୍ୱନିରେ ମଜ୍ଜିଗଲେ । ଏଣେ କୃଷକ ରାମନାମ ଧ୍ୱନିରେ ଜାଗ୍ରତହୋଇ ଧାନଚୋର ଯଶୋବନ୍ତଙ୍କୁ ନେଇ ଅଠଗଡ଼ ରାଜା ରଘୁରାମଙ୍କ ପାଖରେ ହାଜର କରାଇଲେ । ଯଶୋବନ୍ତ, ଶ୍ରୀଜଗନ୍ନାଥଙ୍କର ପରମଭକ୍ତ

ଥିଲେ । ଭକ୍ତର ଡାକରେ ଶ୍ରୀ ଜଗନ୍ନାଥ, ଯଶୋବନ୍ତଙ୍କ ଶରୀରରେ ଆବିର୍ଭୂତ ହେଲେ । ରାଜା ରଘୁରାମ, ଯଶୋବନ୍ତଙ୍କ ଶରୀରରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ଦେଖି ଜାଣିପାରିଲେ ଯେ ଯଶୋବନ୍ତ ଜଣେ ସାମାନ୍ୟ ମାନବ ନୁହନ୍ତି । ତେଣୁ ଦଣ୍ଡ ଦେବା ପରିବର୍ତ୍ତେ ରାଜା ତାଙ୍କୁ ପ୍ରଣାମକଲେ । ଏ ଘଟଣାରେ ସମବେତ ସକଳ ବିମୁଗ୍ଧ ଓ ସ୍ତମ୍ଭୀଭୂତ ହେଲେ । ଜଣାଯାଏ ଏହି ଘଟଣା ପରେ ରାଜା ଯଶୋବନ୍ତଙ୍କର ଶିଷ୍ୟତ୍ୱ ଗ୍ରହଣକଲେ । ଯଶୋବନ୍ତ ଶିଷ୍ୟଙ୍କୁ ଶ୍ରୀ ଜଗନ୍ନାଥଙ୍କର ଧଣ୍ଡା ତୁଳସୀ ଦେବାବେଳେ ତାହାକୁ ଶୂନ୍ୟରୁ ସୃଷ୍ଟିକରି ରାଜାଙ୍କୁ ଅର୍ପଣକରିଥିଲେ । ପ୍ରଭୁଙ୍କ ମାୟା ଏପରି ଯେ, ଦ୍ରୌପଦୀଙ୍କୁ ଯେପରି ସେ ଅସରନ୍ତି ବସ୍ତ୍ର ଦାନ କରିଥିଲେ ଠିକ୍ ସେହିପରି ଯଶୋବନ୍ତଙ୍କ ହାତକୁ ଅଧିକରୁ ଅଧିକ ଧଣ୍ଡା ଆସି ପହଞ୍ଚିଯାଉଥିଲା । ସମସ୍ତେ ସେ ପ୍ରସାଦ ପାଇଲେ ଓ ଏହାପରେ ରାଣୀ ଚଳୋତ୍ତମା ଶିଷ୍ୟତ୍ୱ ଗ୍ରହଣକଲେ । କିନ୍ତୁ ଏହି ଧାନଚୋରି ସମ୍ପର୍କରେ ସାମାନ୍ୟ ପରିବର୍ତ୍ତିତ ଜନମତ ପ୍ରଚଳିତ ଥିବା ଜଣାଯାଏ । ଯଶୋବନ୍ତ ଧାନଚୋରି କରିବା ପରେ କୃଷକ ଦ୍ୱାରା ଧରାହୋଇ ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା ମଧ୍ୟ ତାଙ୍କପ୍ରତି ଦଣ୍ଡବିଧାନ କରିଥିଲେ । ଏହି ଘଟଣାବେଳକୁ ଯଶୋବନ୍ତ ନିଜର କୁକର୍ମ ପାଇଁ ଅନୁତପ୍ତ ହୋଇ ସାରିଥିଲେ । ତେଣୁ ରାଜାଙ୍କ ଦ୍ୱାରା ଦଣ୍ଡିତ ହୋଇଥିଲେ ମଧ୍ୟ ସେ କ୍ରୁଦ୍ଧ ନ ହୋଇ ବରଂ ପ୍ରଶଂସା କରିଥିଲେ ଓ କିଛି ଭବିଷ୍ୟତ ବାଣୀ ମଧ୍ୟ ଶୁଣାଇଥିଲେ । "ତୋ ବଂଶ ସପ୍ତଲେକ ଯାଏ, ଏ ରାଜ୍ୟ ଭୁଞ୍ଜିବେ ନିର୍ଭୟେ ।" କହି ଆଶିଷ ଦାନ କରିଥିଲେ । ଏହି ଦୁଇଟି ମତ ମଧ୍ୟରେ ପାର୍ଥକ୍ୟ ହେଉଛି ଯେ ଗୋଟିଏ ମତ ଅନୁସାରେ ଧାନ ଚୋରି ବେଳକୁ ଯଶୋବନ୍ତ ବିବାହ କରି ନ ଥିଲେ । ଅନ୍ୟ ମତ ଅନୁସାରେ ପତ୍ନୀ ଇଚ୍ଛା ପୂରଣକରିବାପାଇଁ ନିରୁପାୟହୋଇ ଚୋରି କରିଥିଲେ । ବିବାହ ପୂର୍ବରୁ ଧାନଚୋରି କରିଥିବା କଥାଟି ଅଧିକ ବିଶ୍ୱାସଯୋଗ୍ୟ ମନେହୁଏ । କାରଣ ଯଶୋବନ୍ତ ଜଣେ ଅସ୍ୱୀ ବ୍ୟକ୍ତି ଥିଲେ । ପୁଣି ଯଶୋବନ୍ତଙ୍କ ଆଧ୍ୟାତ୍ମିକ ଶକ୍ତିଦ୍ୱାରା ଆକୃଷ୍ଟ-ହୋଇ ରାଜା ତାଙ୍କ ଭଉଣୀକୁ ତାଙ୍କୁ ସମର୍ପଣ କରିଥିବା ଓ ତାଙ୍କଲାଗି ମଠବାଡ଼ି ଜମି ଇତ୍ୟାଦି ଖଞ୍ଜି ଦେଇଥିବା ବିଭିନ୍ନ ପୁସ୍ତକରେ ବର୍ଣ୍ଣନାକରାଯାଇଛି । ତେଣୁ ବିବାହ ପରେ ଏପରି ଉତ୍କଟ ଅଭାବର ସମ୍ମୁଖୀନ ହେବା ଓ ସେଥିପାଇଁ ଧାନଚୋରି କରି ଶାଳକ ରଘୁରାମଙ୍କଦ୍ୱାରା ଦଣ୍ଡିତ ହେବା ଅଧିକ ସମୀଚୀନ ମନେ ହୁଏ ନାହିଁ । ତେବେ ଧାନ ଚୋରି କଥାଟି ହୁଏତ ସତ୍ୟ । କାରଣ ସେ ବିଷୟରେ ଜନଶ୍ରୁତି ସହିତ ପୁସ୍ତକମାନଙ୍କରେ ବର୍ଣ୍ଣନା ଦେଖିବାକୁ ମିଳେ । *

---

* "ମୁଁ କରେ ଏକ ଦାଆ ଘେନି, ଧାନଗଛ କାଟିଲି ପୁଣି ।
ଧାନ ଛୁଡ଼ନ୍ତେ ଯେ ବୋଇଲା, ସଜାବେ ନାମ ଉଚ୍ଚାରିଲା ।
ସେ ଧାନ ରାମ ରାମ ଭଣି, ମୁଁ ଶୁଣି ହୋଇଲି ସନ୍ନ୍ୟାସୀ ।
ହସ୍ତ ପଡ଼ିଲା ଦାଆ ତଳେ, ମୁଁ ଭୋଳ ହେଲି ରାମ ତାଳେ ।"
(ଚଉରାଶି ଆଜ୍ଞା–୨୪୧–୪୪ ବସ୍ଥାଣ)

ଯଶୋବନ୍ତ ଥିଲେ ଜଣେ ସିଦ୍ଧ ସାଧକ । ଯୋଗ ସାଧନାଦ୍ୱାରା ସେ ଅଲୌକିକ କାର୍ଯ୍ୟ କରିପାରୁଥିଲେ । ପଞ୍ଚସଖା ବନ୍ଧୁ ସମସ୍ତରେ ପୁରୀ ଯାଉଥିଲେ ଓ ତତ୍‌କାଳୀନ ଗଜପତି ରାଜା ପ୍ରତାପରୁଦ୍ରଙ୍କ ସହିତ ସେମାନଙ୍କର ଦେଖାହେଉଥିଲା । ଥରେ ଯଶୋବନ୍ତ ତାଙ୍କ ଶିଷ୍ୟମାନଙ୍କ ସହିତ ପୁରୀ ଯାଉଥିବାବେଳେ ଏକ ବ୍ରହ୍ମରାକ୍ଷସର ସମ୍ମୁଖୀନ ହେଲେ ବ୍ରହ୍ମରାକ୍ଷସ ଏମାନଙ୍କୁ ଦେଖି ରାକ୍ଷସଲୀଳା ଆରମ୍ଭ କରିଦେଲା । ଯଶୋବନ୍ତ ତାକୁ ନିଜର ଆଣାବାଡ଼ିଦ୍ୱାରା ଇଙ୍ଗିତ ଦେଲେ ଆଗେ ଆଗେ ଚାଲିବାପାଇଁ । ବ୍ରହ୍ମରାକ୍ଷସ ମଧ୍ୟ ସୁନାପିଲପରି ଆଗେ ଆଗେ ଚାଲିଲା । ବାଟରେ ଯେଉଁମାନେ ଏ ଦୃଶ୍ୟ ଦେଖିଲେ ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଭୟଭୀତହୋଇ ଘରଦ୍ୱାର ପଳାଇବାର ଉପକ୍ରମକଲେ । ବିଜୁଳି ବେଗରେ ଏ ଖବର ଚାରିଆଡ଼େ ଖେଳିଯିବା ସହିତ ରାଜାଙ୍କ କାନକୁ ମଧ୍ୟ ଗଲା । ରାଜା ଯଶୋବନ୍ତଙ୍କ ଯୋଗସାଧନା ସଂପର୍କରେ ପୂର୍ବରୁ ଅବଗତ ଥିଲେ । ତେଣୁ ସେ ଯଶୋବନ୍ତଙ୍କୁ ଅଭ୍ୟର୍ଥନା କରିବାପାଇଁ ଅଠରନଳା ପର୍ଯ୍ୟନ୍ତ ଆସିଲେ । ବ୍ରହ୍ମ-ରାକ୍ଷସଟି ଯଶୋବନ୍ତଙ୍କ ଆଗେ ଆଗେ ବାଘ ଶିଶୁଟିପରି ଆସୁଥିବା ଦେଖି ମୁଗ୍ଧହେଲେ ଓ ଯଶୋବନ୍ତଙ୍କୁ ଅଭ୍ୟର୍ଥନା ଜଣାଇଲେ । ଯଶୋବନ୍ତ ମଧ୍ୟ ରାଜାଙ୍କୁ ଅନୁରୋଧକରି ବ୍ରହ୍ମ-ରାକ୍ଷସକୁ ଗୁଣ୍ଡିଚା ବାଡ଼ିର ରକ୍ଷଣାବେକ୍ଷଣ ଦାୟିତ୍ୱ ପ୍ରଦାନ କରାଇଲେ । ସେହିଦିନରୁ ବାବନାଭୂତ ନାମରେ ରାକ୍ଷସଟା ପୂଜାପାଇ ଆସୁଛି ।

ଯଶୋବନ୍ତଙ୍କ ସଂପର୍କରେ ଆହୁରି ଅନେକ ଜନଶ୍ରୁତି ଶୁଣାଯାଏ । ଥରେ ତାଙ୍କର ପତ୍ନୀ ଆମିଷ ଭୋଜନ କରିବାପାଇଁ ଇଚ୍ଛା ପ୍ରକାଶକଲେ । ଶ୍ରୀଜଗନ୍ନାଥଙ୍କ ପାଖରେ ଭୋଗ-ନ ଲାଗିଲେ ତାହା ସେମାନଙ୍କପାଇଁ ଗ୍ରହଣୀୟ ନୁହେଁ । କିନ୍ତୁ ଆମିଷ ବା ଶ୍ରୀଜଗନ୍ନାଥଙ୍କ ପାଖରେ ଲାଗିହେବ କିପରି ? ଲାଉକୁ ଆମିଷ ନ୍ୟାୟରେ ପାକକରି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପଣ କରାଗଲା । ଯଶୋବନ୍ତ ଭୋଗ ଲଗାଇବା ବେଳେ ଚକ୍ଷୁ ଟେକିବା ସାଙ୍ଗେ ସାଙ୍ଗେ ପୁରୀ ମନ୍ଦିରରେ ଆମିଷ ଗନ୍ଧ ଆସିଲା । ସମସ୍ତେ ଆଚମ୍ବିତ ହେଲେ । ବଡପଣ୍ଡାଙ୍କ ଉପରେ ଦୋଷାରୋପ କରାଗଲା । ରାଜା କ୍ଷୁବ୍ଧ ହେଲେ ଓ ବଡ଼ପଣ୍ଡା ପ୍ରମାଦ ଗଣିଲେ । ମାତ୍ର ଶ୍ରୀ ଜଗନ୍ନାଥଙ୍କଦ୍ୱାରା ରାଜା ସ୍ୱପ୍ନାଦିଷ୍ଟ ହେଲେ ଯେ ମୋର ପରମ ଭକ୍ତ ଯଶୋବନ୍ତ ଆମିଷ ନ୍ୟାୟରେ ଲାଉ ଭୋଗ ଲଗାଇବାରୁ ମୁଁ ତାହା ସାଦରେ ଗ୍ରହଣକଲି । ତେଣୁ ମନ୍ଦିରରେ ଆମିଷ ଗନ୍ଧ ଆସିଲା । ପ୍ରକୃତ ପକ୍ଷେ ବଡ଼ପଣ୍ଡା ନିର୍ଦ୍ଦୋଷ । ତେଣୁ ତାଙ୍କ ପ୍ରତି ଦଣ୍ଡବିଧାନ ଉଚିତ ନୁହେଁ । ଏହା ଚଉରାଶି ଆଜ୍ଞାର ପ୍ରଥମ ବଖାଣରେ ବର୍ଣ୍ଣିତ ।

ଶୁଣାଯାଏ, ପଞ୍ଚସଖା ଯେତେବେଳେ ଯାହା ଚାହୁଁଥିଲେ ତାହାକୁ କାର୍ଯ୍ୟରେ ପରିଣତ କରିଦେଇ ପାରୁଥିଲେ । ଥରେ ଯଶୋବନ୍ତ କୌଣସି ଏକ ଗ୍ରାମକୁ ଯାଉଥିଲେ । ସେ କ୍ଳାନ୍ତ ଅନୁଭବ କଲେ ଓ ଅଧିକ ବାଟ ଚାଲି ପାରିଲେନାହିଁ । ତେଣୁ ଗୋଟିଏ ଖଣ୍ଡିଆ

କାନ୍ଥ ଉପରେ ବସି ନର୍ଦ୍ଦିଷ୍ଟ ଗ୍ରାମକୁ ଗଲେ । କାନ୍ଥଟି ଯାନବାହନ ବା ପ୍ରାଣୀପରି ଚାଲିବାକୁ ଲାଗିଲା । ବାଟରେ ତାଙ୍କୁ ଶୋଷ ଲାଗିଲା, ମାତ୍ର ନିକଟରେ ପାଣିର ସନ୍ଧାନ ପାଇଲେ ନାହିଁ । ଦେଖିଲେ ପାଖରେ କେତେକ ନଡ଼ିଆ ଗଛ ରହିଛି । ମାତ୍ର ଏତେ ଉଚ୍ଚ ନଡ଼ିଆ ଗଛରୁ ନଡ଼ିଆ ତୋଳାହେବ କପରି ? ଯଶୋବନ୍ତ ଯୋଗ ବଳରେ ନଡ଼ିଆ ଗଛକୁ ତଳକୁ ନୁଆଁଇ ଦେଲେ । ତା' ପରେ ସେ ମନ ମୁତାବକ ପଇଡ଼ ତୋଳି ଖାଇସାରିବା ପରେ ଗଛ ପୁଣି ପୂର୍ବଭଳି ସିଧା ହୋଇଗଲା । ଯଶୋବନ୍ତଙ୍କ ଶ୍ରାଦ୍ଧ ଦିବସ ଓଢ଼ଣଷଷ୍ଠୀ ଦିନ ସେହି ଗ୍ରାମରୁ ପ୍ରତ୍ୟେକ ବର୍ଷ ପଇଡ଼ ଆସିବାର ପରଂପରା ରହିଛି ।

ସପ୍ତତିଂଶ ବସ୍ତାଣରେ ବର୍ଣ୍ଣିତହୋଇଛି ଯେ ରାଜା ପ୍ରତାପରୁଦ୍ର ଦେବ ଯଶୋବନ୍ତଙ୍କ ଅଲୌକିକ ମହିମା ବିଷୟରେ ଅବଗତହୋଇ ତାଙ୍କୁଦେଖିବାପାଇଁ ଇଚ୍ଛା-ପ୍ରକାଶ କଲେ । ତେଣୁ ଯଶୋବନ୍ତ ଥରେ ଶିଷ୍ୟମାନଙ୍କ ସହିତ ପୁରୀ ବଡ଼ଦାଣ୍ଡରେ ଯାଉଥିବାବେଳେ ରାଜା ଡଗରଦ୍ୱାରା ତାଙ୍କୁ ଡକାଇଥିଲେ ଓ ନରେନ୍ଦ୍ର ପୁଷ୍କରଣୀ ନିକଟରେ ଥିବା କଦମ୍ବ ଗଛ ମୂଳରେ ପାତ୍ରମନ୍ତ୍ରୀଙ୍କସହ ଅପେକ୍ଷାରତ ଥିଲେ । ଯଶୋବନ୍ତ ରାଜାଙ୍କୁ ଦେଖି ନାନାବର୍ଣ୍ଣର ଗୋଟିଏ ଫୁଲମାଳା ଅର୍ପଣକଲେ । ଗ୍ରୀଷ୍ମ ଋତୁରେ ଏତେ ପ୍ରକାର ସୁଗନ୍ଧିଯୁକ୍ତ ଫୁଲ ଦେଖି ରାଜା ସାର୍ବଭୌମ ଓ ପାତ୍ରମନ୍ତ୍ରୀମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ଶ୍ରୀ ଜଗନ୍ନାଥଙ୍କ ଦୟାରୁ ଶୂନ୍ୟରୁ ଏ ମାଳାଟି ଲାଭକରିଛନ୍ତି ବୋଲି ସେ ରାଜାଙ୍କୁ କହିଲେ । ଏହି ଉତ୍ତରରେ ରାଜା ପ୍ରତାପରୁଦ୍ର ଦେବ ଅଧିକ ବିସ୍ମିତହେଲେ ଓ ଯଶୋବନ୍ତଙ୍କ ଅଲୌକିକ ମହିମା ସମ୍ପର୍କରେ ଜାଣିବାର ଇଚ୍ଛା ପୋଷଣକରି ହାତ ମୁଠାରେ ମୃତ୍ତିକା ଧରି ତାଙ୍କୁ ପରୀକ୍ଷାକଲେ । ଯଶୋବନ୍ତ କିନ୍ତୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ ଯେ ରାଜାଙ୍କ ହାତରେ ଥିବା ମାଟି ସୁନା ହୋଇ ଯାଇଛି । ରାଜା ହାତ ମୁଠା ଖୋଲିଲା ବେଳକୁ ତାହାହିଁ ହୋଇଥିଲା ।

ବୌଦ୍ଧ – ବ୍ରାହ୍ମଣମାନଙ୍କ ପରୀକ୍ଷାପରି ଯଶୋବନ୍ତଙ୍କୁ ବାରମ୍ବାର ପରୀକ୍ଷା କରାଯାଇଛି । ରାଜାଙ୍କ ବ୍ୟାଗତ ପଣ୍ଡା ପଡିଆରୀମାନେ ମଧ୍ୟ ଗୋଟିଏ ହାଣ୍ଡିରେ ଗୋଡ଼ ପୂରାଇ ଢାଙ୍କୁଣୀ ଦେଇ ରଖିଛନ୍ତି ଓ ହାଣ୍ଡିରେ କ'ଣ ଅଛି ତାହା ଯଶୋବନ୍ତଙ୍କଠାରୁ ଜାଣିବାପାଇଁ ଇଚ୍ଛା କରିଛନ୍ତି । ହାଣ୍ଡିରେ କ୍ଷୀର ଅଛି ବୋଲି ଯଶୋବନ୍ତ କହିଛନ୍ତି ଓ ସମବେତ ସମୂହଙ୍କ ସମ୍ମୁଖରେ ଢାଙ୍କୁଣୀ କଢ଼ା ହେବା ପରେ ସମସ୍ତେ କ୍ଷୀର ଦେଖି ଆଶ୍ଚର୍ଯ୍ୟ ହୋଇଛନ୍ତି । ରାଜା ଏ ଘଟଣାରେ ଯଶୋବନ୍ତଙ୍କ ପ୍ରତି ଅତୀବ ପ୍ରୀତହୋଇ ଜଗନ୍ନାଥ, ବଳରାମ, ଅନନ୍ତ ଓ ଅଚ୍ୟୁତଙ୍କୁ ଡାକି ସେମାନଙ୍କ ପାଖରେ ଯଶୋବନ୍ତଙ୍କ ପ୍ରଶଂସା କରିଛନ୍ତି । ପୁଣି ଚୈତନ୍ୟଙ୍କ ପାଖକୁ ଯାଇ ପଞ୍ଚସଖାଙ୍କର ତଥ୍ୟ ବିଷୟରେ ଜାଣିବାକୁ ଚାହିଁଛନ୍ତି । ଶ୍ରୀକୃଷ୍ଣ ହେଉଛନ୍ତି ଆତ୍ମା । ପଞ୍ଚସଖା ହେଉଛନ୍ତି ପଞ୍ଚଆତ୍ମା ବା ପଞ୍ଚଭୂତ ବୋଲି ଚୈତନ୍ୟ କହିଛନ୍ତି । ସେ ପାଞ୍ଚଜଣ ଗୋଟିଏ ଗୋଷ୍ଠୀ ହେଲେ ମଧ୍ୟ

ଗୋଟିଏ ବୃକ୍ଷର ପାଞ୍ଚଟି ପୃଥକ ଶାଖା । 'ଚଉରାଶି ଆଜ୍ଞା'ର ବସ୍ତ୍ରାଳଣି ବସ୍ତ୍ରାଣରେ ଏହି ମର୍ମରେ ଚୈତନ୍ୟ କହିଛନ୍ତି * ଏବଂ ଗୋଟିଏ ପଣସ ମଞ୍ଜି ଜଗନ୍ନାଥଙ୍କୁ ଦେଇଛନ୍ତି । ଜଗନ୍ନାଥ ଦାସ ସେହି ମଞ୍ଜିଟିକୁ ମାଟିରେ ପୋତି ସାଙ୍ଗେ ସାଙ୍ଗେ ଗଛ ଗଛକଲେ । ବଳରାମ ଦାସ ତହିଁରେ ଡାଳପତ୍ର କରାଇଲେ । ଯଶୋବନ୍ତ ସେ ଗଛକୁ ତତ୍‌କ୍ଷଣାତ୍ ଫଳରେ ମଣ୍ଡିତ କଲେ । ସେହିପରି ଅଚ୍ୟୁତ ଫଳକୁ ପାଚିଲାବା ଓ ଅନନ୍ତଙ୍କ ଇଙ୍ଗିତରେ ଗଛ ଫଳ ଭାରରେ ନଇଁପଡ଼ିବା ଇତ୍ୟାଦି କାର୍ଯ୍ୟ ସାଧିତହେଲା । ସେହି ଫଳ ଚୈତନ୍ୟଙ୍କ ସମେତ ପଞ୍ଚସଖାଗଣ ବାଣ୍ଟି ଖାଇଲେ । ପୁଣି ସେମାନେ ଯଶୋବନ୍ତଙ୍କ ହାତରେ ସ୍ୱୟଂ ଶ୍ରୀ ଜଗନ୍ନାଥ ଦେଇଥିବା ଚାମର ଦେଖିବାକୁ ପାଇଛନ୍ତି ।

ଏତାଦୃଶ ଅନ୍ୟ ଏକ ଅଲୌକିକ ଘଟଣାର ବର୍ଣ୍ଣନା ଏହି ପୁସ୍ତକର ୩୯ ବସ୍ତ୍ରାଣରେ କରାଯାଇଛି । ପ୍ରତାପରୁଦ୍ର ଦେବ କଦମ୍ବ ଗଛ ମୂଳରେ ବସି ଆଖିବୁଜି ଦେଖିପାରିଲେ ଗଛଟି ପତ୍ର ପୁଷ୍ପରେ ଭରିଯାଇଛି । ଏହିସବୁ ଘଟଣାରେ ରାଜା ଅତୀବ ପ୍ରୀତହୋଇଛନ୍ତି ଓ ଯଶୋବନ୍ତଙ୍କୁ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ରାଜା ଯଶୋବନ୍ତଙ୍କୁ ସୁଗନ୍ଧଯୁକ୍ତ ଚନ୍ଦନଦେଲେ ଶ୍ରୀ ଜଗନ୍ନାଥଙ୍କ ଶରୀରରେ ଲେପନ କରିବାପାଇଁ । ମାତ୍ର ଯଶୋବନ୍ତ ତାହା ନ କରି ପୁରୀରେ ଜଣେ ରହୁଥିବା ଘର କାନ୍ଥରେ ଲେପନ କଲେ । ଦୂତ ଏ ସମ୍ବାଦ ରାଜାଙ୍କ କର୍ଣ୍ଣଗୋଚର କରାଇଲା । ରାଜା ମଧ୍ୟ ଏ ବିଷୟରେ ଯଶୋବନ୍ତଙ୍କୁ ପ୍ରଶ୍ନକଲେ । ମାତ୍ର ଯଶୋବନ୍ତ ନିର୍ଭୟରେ କହିଲେ ଯେ ସେ ଚନ୍ଦନ ଶ୍ରୀ ଜଗନ୍ନାଥଙ୍କୁ ହିଁ ଲାଗି କରାଇଛନ୍ତି । ଏହାର ସତ୍ୟତା ଜାଣିବାପାଇଁ ରାଜା ଜଣେ ଏ ବିଷୟରେ ତଦାରଖ କରି ଦେଖିଲେ ଯେ ଚନ୍ଦନ ପ୍ରକୃତରେ ଶ୍ରୀ ଜଗନ୍ନାଥଙ୍କ ଦାରୁ ଶରୀରରେ ଲାଗିଛି ।

ଯଶୋବନ୍ତଙ୍କ ବିଷୟରେ ଜାଣିବାପାଇଁ 'ଚଉରାଶି ଆଜ୍ଞା' ଏକ ଉତ୍କୃଷ୍ଟ ମାଧ୍ୟମ । ଏହାର ଐତିହାସିକ ସତ୍ୟତା ପ୍ରତି ଅବଶ୍ୟ ସନ୍ଦେହରହିଛି । ତଥାପି ଯଶୋବନ୍ତଙ୍କ ଅଲୌକିକ ପ୍ରତିଭାର ଗଭୀରତା ମାପିବାରେ ଏହା ଏକ ସହାୟକ ଗ୍ରନ୍ଥ । ସ୍ୱୟଂ ଶ୍ରୀ ଜଗନ୍ନାଥ ଯଶୋବନ୍ତଙ୍କୁ ତାଙ୍କ କର୍ଣ୍ଣକୁଣ୍ଡଳ ପ୍ରଦାନ କଲେ । ଶ୍ରୀ ଜଗନ୍ନାଥଙ୍କଠାରେ ନ ଥାଇ ଯଶୋବନ୍ତଙ୍କ ପାଖରେ କୁଣ୍ଡଳକୁ ଦେଖି ସମସ୍ତେ ତାଙ୍କୁ ଚୋର ଭାବରେ ନିନ୍ଦା କଲେ । କିନ୍ତୁ ପରେ ଶ୍ରୀ ଜଗନ୍ନାଥ କୁଣ୍ଡଳ ପ୍ରଦାନ କରିଥିବା ବୃତ୍ତାନ୍ତ ଜଣାପଡ଼ିବାରୁ ରାଜା ତାଙ୍କୁ ଦଣ୍ଡିତ କରିବା ପରିବର୍ତ୍ତେ କୁଣ୍ଡଳ ଅର୍ପଣକଲେ । ଗୋପୀନାଥଙ୍କ ଦର୍ଶନ ନିମନ୍ତେ

---

* "ତୁମ୍ଭେ ପାଞ୍ଚ ହେ ଏକ ଠାବ, ମହିମା କରିବ ପ୍ରସ୍ତାବ ।
ଏକ ବୃକ୍ଷେ କର ପ୍ରମାଣ, ଭିନ୍ନ ଭିନ୍ନ ହେବ ବାରଣ ।"

( ୨୨୪-୨୫ )

ସତ୍ୟବାଦୀ ଯାଇଁ ଯଶୋବନ୍ତ ସେହି କୁଣ୍ଡଳଟିକୁ ପୁନର୍ବାର ହରାଇଲେ । ଶୋଇଥିବା ଅବସ୍ଥାରେ ତାଙ୍କ କାନରୁ କେହି ଚୋରିକରି ନେଇଗଲେ । ସେମାନଙ୍କୁ ସନ୍ଦେହକରି ଯଶୋବନ୍ତ ଅଭିଶାପ ଦେଲେ ଓ ସେମାନେ ଜଡ଼ା, ବଧିର ହୋଇଗଲେ ।

ପଞ୍ଚସଖା ଥିଲେ ସାଧକ । ଯେତେବେଳେ ଯାହା ଇଚ୍ଛାକରୁଥିଲେ ସେତେବେଳେ ତାହା କରିପାରୁଥିଲେ । ଯଶୋବନ୍ତଙ୍କ ଆଜ୍ଞାରେ ରାଜାଙ୍କ ଶରୀରରେ ବ୍ରହ୍ମ ଆବିର୍ଭୂତ ହେଲେ ଓ ରାଜା ସ୍ୱଶରୀରରେ ତାହା ଦର୍ଶନ କଲେ । ପରବର୍ତ୍ତୀ ସମୟରେ ରାଣୀ ମଧ୍ୟ ବ୍ରହ୍ମ ଦର୍ଶନ କରିଛନ୍ତି । ରାଜପୁତ୍ର ଏକଦା କାଳସର୍ପ ଦଂଶନରେ ଆକ୍ରାନ୍ତ ହୋଇଛନ୍ତି । ମାତ୍ର ଯଶୋବନ୍ତ ତାଙ୍କର ଦୈବୀଶକ୍ତିଦ୍ୱାରା ବିଷଜ୍ୱାଳାରୁ ସନ୍ତାନକୁ ରକ୍ଷା କରିଛନ୍ତି । ତାଙ୍କର ଅଲୌକିକ ମହିମା ଅସୀମ । କାଳସର୍ପ ମୁଖରୁ ବ୍ୟକ୍ତିକୁ ଉଦ୍ଧାର କରିଛନ୍ତି । ଗୋପୀନାଥ ବ୍ରାହ୍ମଣ ଦୃଷ୍ଟିଶକ୍ତି ଫେରିପାଇଲା ପରେ ଛିଣ୍ଡିପଡ଼ିଥିବା ହାତ ଗୋଡ଼ ପୁନରାୟ ଗଢ଼ିଦେବାପାଇଁ ନିବେଦନ କରିଛି । ଯଶୋବନ୍ତ ତାହା ମଧ୍ୟ ପୂରଣ କରିଛନ୍ତି । * ଚର୍ମ ଆଖିରେ ସ୍ୱଶରୀରରେ ବ୍ରହ୍ମଦର୍ଶନ କରାଇଛନ୍ତି ତ କାହାକୁ ଅଭିଶାପ ଦେଇ ଜଡ଼ା ଓ ବଧିର କରିଛନ୍ତି । ଯଶୋବନ୍ତ ଅଲୌକିକ ଶକ୍ତି ସମ୍ପନ୍ନ ଓ ପରୋପକାରୀ ସାଧକ ହେଲେ ମଧ୍ୟ ନିଜର ଆତ୍ମାକୁ କଷ୍ଟହେଲେ ସେହି ଅଲୌକିକ ଶକ୍ତିକୁ ଅଭିଶାପ ଦେବାରେ ପ୍ରୟୋଗ କରିଛନ୍ତି । ସତ୍ୟବାଦୀରେ ଶ୍ରୀ ଜଗନ୍ନାଥଙ୍କ ପ୍ରଦତ୍ତ କୁଣ୍ଡଳକୁ ନେଇ ଯେଉଁ ଘଟଣା ଘଟିଗଲା ସେହି ଉପାଖ୍ୟାନଟି ଏହାର ପ୍ରମାଣଦିଏ । ତେଣୁ ସନ୍ଥ, ସାଧକ ଭକ୍ତ ଯଶୋବନ୍ତ ସମୟକ୍ରମେ ସାଧାରଣ ମଣିଷ ସ୍ତରକୁ ଓହ୍ଲାଇ ଆସିଛନ୍ତି ।

ଚଉରାଶି ଆଜ୍ଞାରେ ଯବନକବି ଭକ୍ତ ସାଲବେଗ ଓ ଯଶୋବନ୍ତଙ୍କ ପ୍ରସଙ୍ଗରେ କିଛି ଉଲ୍ଲେଖ ରହିଛି । ସାଲବେଗଙ୍କ ଜନ୍ମବୃତ୍ତାନ୍ତ ସହିତ ଅଲୌକିକ ମହିମାର କଥା ତହିଁରେ ବର୍ଣ୍ଣିତ । ସାଲବେଗ ବୃନ୍ଦାବନରୁ ଭକ୍ତପୂତ ଭାବରେ ଶ୍ରୀକ୍ଷେତ୍ରକୁ ·ଆସିଛନ୍ତି ଶ୍ରୀ ଜଗନ୍ନାଥଙ୍କ ଦର୍ଶନପାଇଁ । ସେଠାରେ ଯଶୋବନ୍ତଙ୍କ ମହିମା ବିଷୟରେ ଅବଗତ ହେବାପରେ ଅଡ଼ଙ୍ଗ ଆସିବାର ଇଚ୍ଛା ଜାଗ୍ରତ ହୋଇଛି । ଅଡ଼ଙ୍ଗ ଆସି ଯଶୋବନ୍ତଙ୍କୁ ପରୀକ୍ଷାକରିବାକୁ ଚେଷ୍ଟାକରିଛନ୍ତି । ମାପିବାକୁ ଚାହିଁଛନ୍ତି ତାଙ୍କର ଆଲୌକିକ ମହିମା କେତେ ? ଯେଉଁ କଦମ୍ବଗଛ ମୂଳରେ ଯଶୋବନ୍ତ ସଖାମାନଙ୍କ ଗହଣରେ ଉପବିଷ୍ଟ ଥିଲେ ନିଜେ ସାଲବେଗ ସ୍ୱମହିମାରେ ସେହି ଗଛରେ କଦମ୍ବଫୁଲ ଫୁଟାଇ

---

* ହସ୍ତପଦ ଆଦି କରଣ, କଅଁଳ ଆଜ୍ଞା ପରମାଣ
ପ୍ରଭୁ କରୁଣା ହେଲା ତୋତେ, ନିଜ ଦେହ ପାଅ ନିଶ୍ଚିନ୍ତେ ।
ସକଳେ ହରିଗୋଲ କର, ଖଣ୍ଡିଆ ପାଇ ତା ଶରୀର ।

(୫୪ ବିସ୍ତାର-୮୯-୯୧ ପଦ)

ଦେଲେ । ସୌରଭ ଓ ସୌନ୍ଦର୍ଯ୍ୟରେ ସେ ସ୍ଥାନଟି ବୃନ୍ଦାବନରେ ପରିଣତ ହୋଇଉଠିଲା । ଯଶୋବନ୍ତ ତାହା ଦେଖି ଆଶ୍ଚର୍ଯ୍ୟ ହେଲେ ଓ ସାଙ୍ଗେ ସାଙ୍ଗେ ଜଗନ୍ନାଥଙ୍କୁ ସ୍ମରଣକଲେ । ତେଣୁ ଶୂନ୍ୟରୁ ଆଦେଶ ଆସିଲା । ସାଲବେଗ ମୋର ଦାସ । ଆତ୍ମପରିଚୟ ଗୋପନରଖି ତୋ ପାଖରେ ପହଞ୍ଚିଛି । ତା'ର ଅଲୌକିକ ମହିମାଦ୍ୱାରା ସେ ଗଛରେ ଫୁଲଫୁଟାଇ ଦେଇଛି ତୁ ଗଛକୁ ଆଜ୍ଞାକର, ସେ ଫୁଲ ଗଛରୁ ଝଡ଼ିପଡ଼ୁ । * ତେବେ ସେ ଲାଜ ପାଇବ ଓ ଯେପରି ଗୁପ୍ତରେ ତୋ ପାଖକୁ ଯାଇଛି ସେହିପରି ତୋତେ କିଛି ନ ଜଣାଇ ଗୁପ୍ତରେ ଚାଲି ଆସିବ । ଏଥିରୁ ମନେହୁଏ, ସେତେବେଳେ ସାଧକମାନଙ୍କର ମଧ୍ୟ ପ୍ରତିଯୋଗୀ ମନୋଭାବ ରହିଥିଲା ଏବଂ ଲୀଳାମୟ ପୁରୁଷ ଶ୍ରୀ ଜଗନ୍ନାଥ ମଧ୍ୟ ଭକ୍ତ କଳିରେ ଅଂଶ ଗ୍ରହଣ କରୁଥିଲେ । ଏପରି ହେବ ନାହିଁ କାହିଁକି ? ଶ୍ରୀ ଜଗନ୍ନାଥଙ୍କୁ ପୁଣି ଅଧିକ ଭକ୍ତି କରୁଥିବା କମ୍ ଭକ୍ତି କରୁଥିବା ଭକ୍ତମାନେ ଥିବେ ତ ?

ଏଥିଉତ୍ତାରୁ ଭକ୍ତମାନଙ୍କର ପୁଣି ଲଢ଼େଇ ଚାଲିଲା । ଗ୍ରାମମାନଙ୍କରେ ହେଉଥିବା ଲଢ଼େଇ ପାଲି ପରି ସାଧକମାନଙ୍କର ଜ୍ଞାନର ପ୍ରତିଯୋଗିତା ଚାଲିଲା । ସାଲବେଗ ଆଉ ଏକ କାରସାଦି ଦେଖେଇଲେ । ତାଙ୍କ ଆଦେଶରେ ବଗିଚା କଦମ୍ବ ବୃକ୍ଷର ଡାଳଗୁଡ଼ାକ ଭାଙ୍ଗିସିବାକୁ ଲାଗିଲା । ତେଣୁ ଯଶୋବନ୍ତ ଏମିତି ମନ୍ତ୍ର କରିଦେଲେ ଯେ ଯେତେ ଡାଳ ଭାଙ୍ଗିଥିଲା ସେଗୁଡ଼ାକ ତଳକୁ ପଡ଼ିଲା ନାହିଁ କିମ୍ବା ଗଛରେ ଲାଗି ରହିଲା ନାହିଁ । ଶୂନ୍ୟରେ ଝୁଲି ରହିଲା । ସାଲବେଗଙ୍କର ତହିଁରୁ ଅଧିକ କିଛି କରିବାପାଇଁ ଆଉ ବୁଦ୍ଧି ନଥିଲା । ସେ ଅନୁଭବ କଲେ ଯଶୋବନ୍ତଙ୍କ ମହିମା ତାଙ୍କଠାରୁ ଅଧିକ । ସେ ଜଣେ ସିଦ୍ଧ ସାଧକ ଓ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ । ଏହା ଅନୁଭବକରି ସାଲବେଗ ଯଶୋବନ୍ତଙ୍କୁ ପ୍ରଣତି ଜ୍ଞାପନକଲେ । ଅବଶ୍ୟ କେତେକ ସମାଲୋଚକ ମତ ଦିଅନ୍ତି ଯେ ଇତିହାସ ଦୃଷ୍ଟିରୁ ଭକ୍ତ ସାଲବେଗ ଯଶୋବନ୍ତଙ୍କ ଶିଷ୍ୟ ହେବା ଅସମୀଚୀନ ମନେହୁଏ । ** ସାଲବେଗଙ୍କ ପରି ବାରଙ୍ଗ ଗୋସାଇଁ ମଧ୍ୟ ନିଜ ଅଲୌକିକ ମହିମାର କାରସାଦି ଯଶୋବନ୍ତଙ୍କୁ ଦେଖାଇବା ଅଭିପ୍ରାୟରେ ବଢ଼ିଲା ନଈରେ ମୃଗଛାଲ ପକାଇ ନଈ ପାରି ହେବାର ଉପକ୍ରମ କଲେ । ଯଶୋବନ୍ତ ଏହା ଜାଣିପାରି ନଈକୁ ଶୁଖାଇ ଦେଲେ । ନଈ ମଝିରେ ବାରଙ୍ଗ ଗୋସାଇଁ ରହିଗଲେ ।

---

* ସାଲବେଗ ଯେ ମୋର ଦାସ, ଗୁପତେ ଅଛି ତୋର ପାଶ ।
ତାର ମହିମା କ ମନ୍ତ୍ରରେ, ପୁଷ୍ପ ଫୁଟି ରହି ବୃକ୍ଷରେ ।
ତୁ ଏବେ ବୃକ୍ଷେ ଆଜ୍ଞା କର, ଫୁଲଝଡ଼ି ପଡ଼ୁ ମହିର ।
ତେବେ ସେ ଲାଜ ପାଇସିବ, ଗୁପତେ ତୋତେ ନ କହିବ ।

** ପଣ୍ଡିତ ନୀଳମଣି ମିଶ୍ର–ଭକ୍ତ କବି ସାଲବେଗ : ଜୀବନୀ ଓ ଭଜନାବଳୀ–ପୃ ୪୪–
୧୯୭୭, ଗ୍ରନ୍ଥ ମନ୍ଦିର–କଟକ

ବାରଙ୍ଗଙ୍କ ଆଶ୍ରମରେ ଯଶୋବନ୍ତ ଓ ବାରଙ୍ଗ କିଛୁଦିନ ଅଧିଷ୍ଠାନ କରିଥିଲେ । ସେତେବେଳେ ଖାଲି ପଞ୍ଚଆଶଟି ନେଉଟିଆ ଶାଗ କିଆରିରେ ପରିଣତ ହୋଇଗଲା । ଅଯମଯ୍ୟରେ ଜମ୍ବୁଗଛରେ କଢ଼ ହୋଇଛି । ଏହିପରି ଅନେକ ଘଟଣା । ଅନ୍ୟ କାହାର ଶିଷ୍ୟ ମଧ୍ୟ ବେଳେବେଳେ ଯଶୋବନ୍ତଙ୍କଠାରେ ଶରଣାପନ୍ନ ହେଉଥିଲେ । ଚଉରାଶି ଆଜ୍ଞା'ରେ ଏହିପରି ଏକ ଘଟଣାର ବର୍ଣ୍ଣନା ରହିଛି । ଅନନ୍ତଙ୍କର ଜଣେ ଶିଷ୍ୟ ଯଶୋବନ୍ତଙ୍କ ଠାରେ ପରାଜିତ ହୋଇ ତାଙ୍କର ଆଶ୍ରିତ ହୋଇଛନ୍ତି ।

ଯଶୋବନ୍ତଙ୍କ ଦେହାନ୍ତ ସମୟରେ ମଧ୍ୟ ଏହିପରି ଅଲୌକିକ ମହିମା ସମ୍ପୃକ୍ତ ଥିବା ଜଣାଯାଏ । ଚୈତନ୍ୟ ଦେହତ୍ୟାଗ କଲାବେଳକୁ ଯଶୋବନ୍ତ କୁଜଙ୍ଗରେ ଥିଲେ । ଏହାପରେ ସେ ସ୍ୱଗ୍ରାମ ଅଞ୍ଚଳକୁ ଫେରି ଆସିଲେ । ତାଙ୍କର ମଧ୍ୟ ପ୍ରୟାଣର ଦିନ ପାଖେଇ ଆସିଥିଲା । ଏହା ସେ ଦିବ୍ୟଚକ୍ଷୁରେ ଦେଖିପାରିଲେ । ତେଣୁ ସେ ରାଜା ରଘୁରାମକୁ କହିଛନ୍ତି ତାଙ୍କପାଇଁ କଦମ୍ବ ବୃକ୍ଷ ମୂଳରେ ସମାଧି ପୀଠ ସ୍ଥିର କରିବା ପାଇଁ । 'ଷଷ୍ଠୀ' ମେଳା' ପୁସ୍ତକରେ ଲେଖି ଦାସ ଉଲ୍ଲେଖ କରିଛନ୍ତି ଯେ ଯଶୋବନ୍ତ କାଳେ ନିଜର ଦେହତ୍ୟାଗ ସମୟରେ ଭବିଷ୍ୟତ ବାଣୀ ଶୁଣାଇଥିଲେ । କେଉଁମାସ, କେଉଁଦିନ ଦେହତ୍ୟାଗ କରିବେ ତାହା ସେ ପୂର୍ବରୁ ଜାଣି ପାରିଥିଲେ । ଅନ୍ୟ କେଉଁ ଆଡ଼କୁ ନ ଯାଇଁ ସିଧା ଶ୍ରୀକ୍ଷେତ୍ରକୁ ପ୍ରାଣ ଗୁଳି ଯିବା ଓ ଶ୍ରୀଜଗନ୍ନାଥଙ୍କଠାରେ ଲୀନ ହେବାପାଇଁ ସେ ଆଶା ପ୍ରକାଶ କରିଥିଲେ । * ସାଧାରଣ ମାନବ ପରି ଯଶୋବନ୍ତଙ୍କ ପାଇଁ ମୃତ୍ୟୁ ଏକ ଭୟ ବା ଆତଙ୍କ ନ ଥିଲା । ଇହଜଗତର ମାୟା କବାଟ ଫିଟାଇ ହସି ହସି ମରଣକୁ ବରଣ କରିନେବାପାଇଁ ସେ ଚାହିଁଥିଲେ । ** ତାହାହିଁ ହେଲା । ମାର୍ଗଶିର ଶୁକ୍ଳ ଷଷ୍ଠୀ ତିଥିରେ ସେ ଦେହତ୍ୟାଗ କଲେ ଓ ତାଙ୍କୁ କଦମ୍ବ ମୂଳରେ ଥିବା ମଠର ପଶ୍ଚିମ-ଦକ୍ଷିଣ ଭାଗରେ ସମାଧି ଦିଆଗଲା । ଏହି ଦିନ ତାଙ୍କର ଶ୍ରାଦ୍ଧ ବାର୍ଷିକୀ ଏଯାବତ ପାଳନ କରାଯାଉଛି ।

---

* ନଉଯିବ କେଯାଁଡ ଜନ୍ମୁଛି ପ୍ରଭୁ ନିକର ଦିନେ
ମାର୍ଗଶିର ମାସ ନିଦାନ ଯିବ ଉତ୍ତରାୟଣେ ।
ବାରକଳା ରବିବାରରେ ରବିବାର ଦିବସ
ପିଣ୍ଡରୁ ପ୍ରାଣ ଗୁଞ୍ଜିଯିବ ମୁଁ ଯେ ହେବି ହରଷ ।
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ପଥ ଯେଉଁ ଘଟଣା
ସିଠ ପାହାଗ୍ର ଜଗିଥିବେ ମୁଁ ଯେ ନୋହିବି ବଣା" (ଷଷ୍ଠୀମେଳା)

** "ହରି ଯେଉଁନାମ ଧରିଣ ହେଲେ ଜିଣିଲି ଲଙ୍କା
ସେ ପାଦୁ ମୋ ମନ ନ ଟଳୁ କମ୍ପା ଯମକୁ ଦକା
ଛ ଛନ୍ଦେ ପ୍ରଭୁଙ୍କୁ ଜପି ମୁଁ ପାଇ ମୁକତି ବାଟ
ପାମର ବନ୍ଧୁଆ କହଇ ଫିଟୁ ମାୟା କବାଟ ।" (ଷଷ୍ଠୀ ମେଳା)

ଏଠାରେ ଏକ ମେଳା ସେଦିନ ଅନୁଷ୍ଠିତ ହେଉଥିବା ଓ ବହୁସଂଖ୍ୟକ ଭକ୍ତ ଦର୍ଶକଙ୍କର ସମାବେଶ ହେଉଥିବା ବିଷୟ ପୂର୍ବରୁ ଉଲ୍ଲେଖ ଅଛି । ବର୍ତ୍ତମାନ ଏହି ମେଳା ତଥା ଶ୍ରାଦ୍ଧ ଉତ୍ସବର ସ୍ୱରୂପ ଓ କାର୍ଯ୍ୟକ୍ରମ ଭିନ୍ନ ରୂପ ଧାରଣ କରିଛି । ଗ୍ରାମର ଉତ୍ସାହୀ ବ୍ୟକ୍ତି କେତେଜଣଙ୍କ ନେତୃତ୍ୱରେ 'ଯଶୋବନ୍ତ ବିଦ୍ୟାପୀଠ' ଓ ଯଶୋବନ୍ତଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ଯୁବକ ସଂଘ ବା କ୍ଲବ୍ ଗଠିତ ହୋଇଛି । ଶ୍ରାଦ୍ଧ ଉତ୍ସବରେ ବିଭିନ୍ନ ସାଂସ୍କୃତିକ ଓ ସାହିତ୍ୟିକ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଛି । ବିଶିଷ୍ଟ ସାରସ୍ୱତ ବ୍ୟକ୍ତିମାନେ ଆମନ୍ତ୍ରିତ ହୋଇଆସନ୍ତି ଓ ଏହି ଉତ୍ସବରେ ସନ୍ଥ ସାଧକ ଓ କବି ଯଶୋବନ୍ତଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ସାରଗର୍ଭକ ବକ୍ତୃତାମାନ ପ୍ରଦାନ କରନ୍ତି । ଏତଦ୍‌ବ୍ୟତୀତ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ଯଶୋବନ୍ତଙ୍କ ସ୍ମୃତିରେ ଏକ ଗବେଷଣା ପ୍ରତିଷ୍ଠାନ ଗଢ଼ା ହେବାର ଯୋଜନା ମଧ୍ୟ ରହିଛି । ଅର୍ଥାଭାବରୁ ଏହି କାର୍ଯ୍ୟ ତ୍ୱରାନ୍ୱିତ ହୋଇ ପାରୁନଥିବା ଜଣାଯାଏ । ଯଶୋବନ୍ତଙ୍କର ମଠ, ବାଡ଼ି ଓ ଗୃହଜମି ବେଶ୍ କିଛି ପରିମାଣରେ ଥିଲା । ସଂଭବତଃ ଉଚିତ ରକ୍ଷଣାବେକ୍ଷଣ ଅଭାବରୁ ଅର୍ଥ ସଙ୍କଟ ସୃଷ୍ଟି ହେଉଛି । ଦୀର୍ଘ ପାଞ୍ଚଶତ ବର୍ଷର ମଠ ଦିନକୁ ଦିନ ଜରାଜୀର୍ଣ୍ଣ ଅବସ୍ଥା ପ୍ରାପ୍ତ ହୋଇ ଆସନ୍ନ ଧ୍ୱଂସ ମୁଖରେ ପତିତ ହୋଇଥିଲା । ଏବେ ସେହି ଅବସ୍ଥାର ସାମାନ୍ୟ ପରିବର୍ତ୍ତନ ହୋଇଛି । ଗ୍ରାମବାସୀମାନେ କିଛି ଅର୍ଥ ସରକାରୀ ସାହାଯ୍ୟ ଆକାରରେ ଆଣି ମଠର ଉନ୍ନତି ବିଧାନ ଉଦ୍ଦେଶ୍ୟରେ ବ୍ୟୟ କରିଛନ୍ତି ।

## ଯଶୋବନ୍ତ ସମ୍ପର୍କରେ କେତୋଟି ବିବଦମାନ ମତ :—

ଯଶୋବନ୍ତ ବା ତତ୍‌କାଳୀନ କବି, ସାହିତ୍ୟିକ, ସାଧକମାନଙ୍କର ନିର୍ଭୁଲ ଓ ପୂର୍ଣ୍ଣାଙ୍ଗ ଜୀବନୀ ରଚିତ ହୋଇ ନ ଥିବାରୁ ଅନେକ ସ୍ଥଳରେ କିଂବଦନ୍ତୀ, ଜନଶ୍ରୁତି ଓ ଅନୁମାନ ଉପରେ ନିର୍ଭର କରିବାକୁ ହୋଇଛି । ତେଣୁ ଗୃହୀତ ତଥ୍ୟଗୁଡ଼ିକ ଯେ ସଂପୂର୍ଣ୍ଣ ଭାବରେ ଐତିହାସିକ ତଥା ସତ୍ୟଭିତ୍ତିକ ଏହା କୁହାଯାଇ ନ ପାରେ । ସେଥିପାଇଁ ହିଁ ଗୋଟିଏ ଗୋଟିଏ ବିଷୟରେ ଏକାଧିକ ମତ ଦେଖାଯାଏ ।

## ଯଶୋବନ୍ତଙ୍କ ଜନ୍ମ ସମୟ :—

(୧) ଶିବସ୍ୱରୋଦୟ (୧୯୬୯ରେ ସଂପାଦିତ)ର ମୁଖବନ୍ଧରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି କହନ୍ତି, ଯଶୋବନ୍ତ ଖ୍ରୀ ୧୪୯୫ରୁ ଖ୍ରୀ ୧୫୦୦ ମଧ୍ୟରେ ଜନ୍ମ ଗ୍ରହଣ କରିଥିବା ସଂଭବ । ଏଥିପାଇଁ ସେ ସମସାମୟିକ ଗ୍ରନ୍ଥ, ଦେଶ, ପ୍ରଚଳିତ କିଂବଦନ୍ତୀ ଉପରେ ନିର୍ଭର କରିଛନ୍ତି ।

(୨) ଓଡ଼ିଆ ସାହିତ୍ୟର ଇତିହାସ— ସୂର୍ଯ୍ୟନାରାୟଣ ଦାସ (ପ୍ରଥମ ପ୍ରକାଶ—୧୯୬୩) ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଉଦସ୍ତ କାହାଣୀର ବର୍ଣ୍ଣିତ ବିଷୟ ଉପରେ ନିର୍ଭର

କରି ଯଶୋବନ୍ତଙ୍କ ଜନ୍ମ ସମୟକୁ ଖ୍ରୀ ୧୪୮୭ ଖ୍ରୀବରେ ଗ୍ରହଣକରିଛନ୍ତି । (ଓଡ଼ିଶା ସାହିତ୍ୟର ଇତିହାସ-୩ୟ ପ୍ରକାଶ-୧୯୭୮ ପୃଷ୍ଠା ୪୯୬ ଦ୍ରଷ୍ଟବ୍ୟ)

୩) ସୁରେନ୍ଦ୍ର ମହାନ୍ତି ମଧ୍ୟ ଯଶୋବନ୍ତ ଖ୍ରୀ ୧୪୮୭ରେ ଜନ୍ମଗ୍ରହଣ କରିଥିଲେ ବୋଲି ମତବ୍ୟକ୍ତ କରିଛନ୍ତି । (ଓଡ଼ିଆ ସାହିତ୍ୟର ଆଦିପର୍ବ—୧ମ ପ୍ରକାଶ ୧୯୬୭—ପୃ ୨୯୫)

୪) ଅଧ୍ୟାପକ ଗୌରାଙ୍ଗ ଚରଣ ରାୟ, ଚଉରାଶି ଆଜ୍ଞାରେ ବର୍ଣ୍ଣିତ ବିଷୟକୁ ଆଧାର କରି ଯଶୋବନ୍ତ ଖ୍ରୀ ୧୭୧୨ ରେ ଜନ୍ମଗ୍ରହଣ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । (ପ୍ରାଚୀନ-୨ୟ ସଂଖ୍ୟା-ପୃ ୧୦୫)

୫) କେହି କେହି ପଞ୍ଚସଖାଙ୍କୁ ଏକାବେଳକେ ଅଷ୍ଟାଦଶ ଶତାବ୍ଦୀର ବୋଲି ମତ ବ୍ୟକ୍ତ କରନ୍ତି । ଆଉ କେତେଜଣ ସମାଲୋଚକ ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କୁ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗର ବ୍ୟକ୍ତି ଭାବରେ ଗ୍ରହଣ କରୁଥିବାବେଳେ ଅଚ୍ୟୁତାନନ୍ଦ ଓ ଯଶୋବନ୍ତ ଅଷ୍ଟାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ ବୋଲି ମତବ୍ୟକ୍ତ କରନ୍ତି । ଏ ପ୍ରସଂଗରେ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ଲିଖିତ, 'ପଞ୍ଚସଖା ପରମ୍ପରା ପରୀକ୍ଷା' ଓ 'ପଞ୍ଚସଖା ଏକ ପ୍ରବଞ୍ଚନା' ପ୍ରବନ୍ଧ ଦୁଇଟି ପ୍ରଣିଧାନଯୋଗ୍ୟ । ଏହି ପ୍ରବନ୍ଧ ଦୁଇଟି ଯଥାକ୍ରମେ ଝଙ୍କାର-ମାର୍ଚ୍ଚ ୧୯୬୦ ଓ ଦିଗନ୍ତ-ସେପ୍ଟେମ୍ବର ୧୯୬୭ରେ ପ୍ରକାଶିତ ହୋଇଥିଲା । ଶ୍ରୀ ମିଶ୍ର ପଞ୍ଚସଖାଙ୍କ ରହସ୍ୟ ଉଦ୍‌ଘାଟନ ପ୍ରସଙ୍ଗରେ ଲେଖିଛନ୍ତି, "ପଞ୍ଚସଖା ରହସ୍ୟର ସ୍ରଷ୍ଟା ଅଚ୍ୟୁତାନନ୍ଦଙ୍କ କାଳ ଯେ ଅଷ୍ଟାଦଶ ଶତାବ୍ଦୀ, ଏହା ପ୍ରମାଣ କରାଗଲା । ତାଙ୍କ ମାମୁଁ ଶ୍ୱଶୁର ଯଶୋବନ୍ତ ତାଙ୍କଠାରୁ ବୟସରେ ଜ୍ୟେଷ୍ଠ ହେଲେ ହେଁ ସେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀର ବ୍ୟକ୍ତି ।"

୬) ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ପଞ୍ଚସଖା ଧାରଣାକୁ ଏକ ପ୍ରବଞ୍ଚନା କହୁଥିବାବେଳେ ଡଃ କୃଷ୍ଣଚରଣ ସାହୁ 'ପଞ୍ଚସଖା ପ୍ରବଞ୍ଚନା ନୁହେଁ' ପ୍ରବନ୍ଧ 'ଦିଗନ୍ତ' (ଡିସେମ୍ବର ୧୯୬୭—ଫେବୃୟାରୀ ୧୯୬୮)ରେ ପ୍ରକାଶକରିବା ମାଧ୍ୟମରେ ସ୍ୱମତ ବ୍ୟକ୍ତକରନ୍ତି । ଡଃ ନଟବର ସାମନ୍ତରାୟ 'ସଖାଜ୍ଞାନ ପଞ୍ଚସଖା' (୧୯୭୫) ପୁସ୍ତକରେ ଏ ସମସ୍ତ ମତର ପରୀକ୍ଷା ନିରୀକ୍ଷା କରିଛନ୍ତି । ଯଶୋବନ୍ତଙ୍କ ଜନ୍ମ ସମ୍ପର୍କରେ ତେଣୁ ନିର୍ଦ୍ଦିଷ୍ଟ ଏକ ଦିନ, ବାର, ତାରିଖ ପାଇବା ସମ୍ଭବ ହୁଏ ନାହିଁ । କେବଳ ଜନ୍ମ ସମୟ ନୁହେଁ, ଅନ୍ୟାନ୍ୟ କେତେକ ବିଷୟରେ ମଧ୍ୟ ଭିନ୍ନ ମତ ଥିବା ପରିଲକ୍ଷିତହୁଏ ।

**ଯଶୋବନ୍ତଙ୍କ ପିତାମାତାଙ୍କ ନାମ** :—ଯଶୋବନ୍ତଙ୍କର ପିତାଙ୍କ ନାମ ଜଗୁ ମଲ୍ଲିକ ଓ ମାତାଙ୍କ ନାମ ରେଖାଦେବୀ ବୋଲି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଶିବସ୍ୱରୋଦୟ ପୁସ୍ତକର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

(ଓଡ଼ିଆ ସାହିତ୍ୟର ଇତିହାସ-୩ୟ ସଂସ୍କରଣ-ପୃ୯୩) ଓ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି (ପଞ୍ଚସଖା ଓଡ଼ିଆ ସାହିତ୍ୟ-୧ମ ପ୍ରକାଶ ୧୯୬୫-ପୃ୨୭) ସେମାନଙ୍କ ପୂର୍ବ ମତକୁ ଗ୍ରହଣ କରିଥିବା ଜଣାଯାଏ । ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଅନୁମାନ କରନ୍ତି ଯେ ଯଶୋବନ୍ତଙ୍କ ନାମ ହୁଏତ ଜଗନ୍ନାଥ ମଲ୍ଲିକ ଥିଲା, ସାଧାରଣରେ ଜଗୁ ମଲ୍ଲିକ ଭାବରେ ସେ ପରିଚିତ ଥିଲେ ।

କିନ୍ତୁ ଡଃ ବଂଶୀଧର ମହାନ୍ତି (ଓଡ଼ିଆ ସାହିତ୍ୟର ଇତିହାସ ୩ୟ ଭାଗ-ପ୍ରେଣ୍ଡିସ୍ ପବ୍ଲିସର୍ସ-ପୃ୪୩, ୪୮ରେ) ଦର୍ଶାଇଛନ୍ତି ଯେ ତାଙ୍କ ପିତାଙ୍କ ନାମ ବଳଭଦ୍ର ଥିଲା । ସେ ଲେହି ଦାସଙ୍କ ରଚିତ 'ଷଷ୍ଠୀ ମେଳା'ରୁ ଦୃଷ୍ଟାନ୍ତ ଦେଇ ଏହାର ସତ୍ୟତା ପ୍ରତିପାଦନ କରିବାର ପ୍ରୟାସ କରିଛନ୍ତି । 'ଷଷ୍ଠୀମେଳା'ରେ ଉଲ୍ଲେଖ ଅଛି —

"ଲେହି କହନ୍ତି ଶୁଣହୋ ଦାଉଳ, ସ୍ୱାମୀ ଜନ୍ମସ୍ଥାନ ଦେଖିବା ଚାଲ ।
ପିତାମାତାଙ୍କ ନାମ ଅଟେ କସ, ବୁଝାଇ କୁହ ଅହେ ଲେହି ଦାସ ।
ପିତାଙ୍କ ନାମ ବଳଭଦ୍ର ଜାଣ, ମାତାଙ୍କ ନାମ ରେଖାଦେବୀ ପୁଣ ।"

ଯଶୋବନ୍ତ ଗୋସାଇଁଙ୍କ ମନ୍ତ୍ରବୋଲରୁ ମଧ୍ୟ ଡଃ ମହାନ୍ତି ଦୃଷ୍ଟାନ୍ତ ଦେଇ ଯଶୋବନ୍ତଙ୍କ ପିତାଙ୍କ ନାମ ବଳଭଦ୍ର ହୋଇଥିବା ଦର୍ଶାଇଛନ୍ତି । ସେଥିରେ ଉଲ୍ଲେଖ ଅଛି "ପିତାର ନାମ ବଳଭଦ୍ର ଶୁଣ, ଯନ୍ତ୍ର ବୋଲି କହେ ଯଶୋବନ୍ତ ପୁଣ ।" ଏହି ଗ୍ରନ୍ଥମାନଙ୍କରେ ବଳଭଦ୍ର ତାଙ୍କର ପିତା ବୋଲି ଯେତେବେଳେ ଉଲ୍ଲେଖ ଅଛି ତେଣୁ ଜଗନ୍ନାଥ ବା ଜଗୁ ମଲ୍ଲିକ ପରିବର୍ତ୍ତେ ଯଶୋବନ୍ତ, ବଳଭଦ୍ର ମଲ୍ଲଙ୍କର ପୁଅ ହୋଇଥିବା ଅଧିକ ସମୀଚୀନ ।

**ଅଡ଼ଙ୍ଗର ଶାସକ ରଘୁରାମ :—** ୧) ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ଶିବସ୍ୱରୋଦୟ'ର ମୁଖବନ୍ଧ-ପୃ ୫ରେ ଉଲ୍ଲେଖ କରିଛନ୍ତି ଯେ ଅଡ଼ଙ୍ଗ କିଲ୍ଲାର ତଦାନୀନ୍ତନ ରାଜା ରଘୁରାମ, ଯଶୋବନ୍ତଙ୍କ ଧର୍ମବିଶ୍ୱାସ ଓ ପ୍ରତିଷ୍ଠାରେ ମୁଗ୍ଧହୋଇ ନିଜର ଭଗିନୀ ଅଞ୍ଜନାକୁ ତାଙ୍କ ହାତରେ ସମର୍ପଣକରିଥିଲେ ।

୨) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଠିକ୍ ସେହିକଥା ମାତ୍ର ଉଲ୍ଲେଖକରିଛନ୍ତି ।

୩) ଡଃ ବଂଶୀଧର ମହାନ୍ତି (ଓଡ଼ିଆ ସାହିତ୍ୟର ଇତିହାସ-ପୃ୪୪୦ରେ) ଅଡ଼ଙ୍ଗର ରାଜା ରଘୁ ଚମ୍ପତିବୋଲି ଉଲ୍ଲେଖ କରିଛନ୍ତି । ଲେହି ଦାସଙ୍କ 'ଷଷ୍ଠୀମେଳା'ରେ ଉଲ୍ଲେଖ ଅଛି—ପ୍ରତି ଗ୍ରାମରେ ଯଶୋବନ୍ତଙ୍କର ଶିଷ୍ୟ ଲେହି ଓ ବାରଙ୍କ ପ୍ରଭୃତି ସାଧୁମାନେ ଅଭ୍ୟର୍ଥନା ପାଇଛନ୍ତି । ସେମାନେ ପୁଣି ସ୍ୱଗ୍ରାମକୁ ରଘୁଚମ୍ପତିଙ୍କ ପାଖକୁ ଫେରିଆସି ମେଳା କରିଛନ୍ତି ।

"ଲେଛନ୍ତି ମାଧବ ଅଟେ ରାମଦାସ, ବାରଙ୍ଗ ବାଲିଆ ବାଉଳ ଦାସ,
ସମସ୍ତ ଭକ୍ତଗଣମାନ ମିଳି, ପ୍ରବେଶ ହେଲେ ଚମ୍ପତିଙ୍କ ପୁର ।"

ଏହିପରି ବିଭିନ୍ନ କ୍ଷେତ୍ରରେ ରଘୁରାମ ଚମ୍ପତିଙ୍କ ନାମୋଲ୍ଲେଖରୁ ଜଣାଯାଏ ଯେ ତତ୍କାଳୀନ ଅଡ଼ଙ୍ଗର ରାଜା ରଘୁରାମ ଚମ୍ପତି ଥିଲେ । 'ଷଷ୍ଠୀମେଳା' ପ୍ରସଙ୍ଗରେ ଡଃ ମହାନ୍ତି ଉଲ୍ଲେଖ କରିଛନ୍ତି "ବର୍ଣ୍ଣନା ଭିତରେ ପ୍ରଧାନ ଚରିତ୍ର ହେଉଛନ୍ତି ଅଡ଼ଙ୍ଗ କଳ୍ପାର ରଘୁନାଥ ଚମ୍ପତି ଯେ ବୈଷ୍ଣବମାନଙ୍କର ସେବାକରି ମନ୍ତ୍ର ଲାଭ କରି ଧନ୍ୟ ହୋଇଛନ୍ତି ।" (ପୃ୪୪୨) ବିଭିନ୍ନ କ୍ଷେତ୍ରରେ 'ରଘୁରାମ'ଙ୍କ ନାମୋଲ୍ଲେଖ ଥିବା ସ୍ଥଳେ ଏଠାରେ ଡଃ ମହାନ୍ତି ରଘୁନାଥ ଚମ୍ପତିବୋଲି ଉଲ୍ଲେଖ କରିଛନ୍ତି । ପୁନଶ୍ଚ 'ଚଉତିଶି ଆଜ୍ଞା'ର ଆଲୋଚନା ପ୍ରସଂଗରେ ଡଃ ମହାନ୍ତି ଲେଖିଛନ୍ତି—"ଲୋକେ ଧାନଚୋର ଯଶୋବନ୍ତଙ୍କୁ ତତ୍କାଳୀନ ଅଡ଼ଙ୍ଗ ରାଜା ରଘୁରାମ ଜେନାଙ୍କ ପାଖରେ ହାଜର କରାଇଲେ ।" (ପୃ୪୫୨) ଏମିତି ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ଆଲୋଚନାରୁ ଅଡ଼ଙ୍ଗ ରାଜାଙ୍କ ନାମରେ ସମତା ଆସେନାହିଁ । ତେବେ ମନେ ହୁଏ ରାଜାଙ୍କ ନାମ ରଘୁରାମ ଚଂପତି ବା ଚଂପତିରାୟ ଥିଲା । ଷଷ୍ଠୀମେଳା ଗ୍ରନ୍ଥ ଶେଷରେ ଉଲ୍ଲେଖ ଅଛି "ଯଶୋବନ୍ତ ଲେଛି ପ୍ରସ୍ତାବେ ରମ୍ଭୁ ଚଂପତି ଜ୍ଞାନ ପ୍ରଶ୍ନେ ଏକ ଦଶ ଶିଷ୍ୟ ମିଳିତଂ ତୀର୍ଥ ଭ୍ରମଣେ ରଚିତ ।" ରାଜାଙ୍କର ପଦବୀ ଜେନାଥିବା ବିଷୟ ଅନ୍ୟ କୌଣସି ପୁସ୍ତକରେ ଉଲ୍ଲେଖ ନାହିଁ ।

ଯଶୋବନ୍ତଙ୍କ ମହାପ୍ରସ୍ଥାନର ବର୍ଣ୍ଣନା ପ୍ରସଙ୍ଗରେ ଡଃ ମହାନ୍ତି ଲେଖିଛନ୍ତି—"କୁଜଙ୍ଗରୁ ଫେରି ଯଶୋବନ୍ତ ଜାଣି ପାରନ୍ତି ଯେ ସେ ଆଉ ବେଶୀ ଦିନ ରହି ପାରିବେ ନାହିଁ ଏହି ନଶ୍ୱର ଶରୀରରେ । ସେଥିପାଇଁ ନିଜର ଶ୍ୱଶୁର ଭକ୍ତ ରଘୁ ଚମ୍ପତିଙ୍କୁ କହିଛନ୍ତି ସମାଧିସ୍ଥାନ ନିର୍ଦ୍ଦିଷ୍ଟ କରିବା ପାଇଁ ସିଦ୍ଧ କଦମ୍ବ ମୂଳରେ ।" (ପୃ ୪୭୦) ଏଠାରେ ପୁଣି ଏକ ବିବଦମାନ ପ୍ରଶ୍ନ ଉଠେ । ରାଜା ରଘୁରାମ, ଯଶୋବନ୍ତଙ୍କର ଶ୍ୱଶୁର ନା ଶାଳକ ? ଏଥିପୂର୍ବରୁ ଆଲୋଚକମାନେ ରଘୁରାମ ତାଙ୍କ ଭଗିନୀଙ୍କୁ ଯଶୋବନ୍ତଙ୍କୁ ଅର୍ପଣ କରିଥିବା ଉଲ୍ଲେଖ କରିଛନ୍ତି । ଭଗ୍ନି ବା କନ୍ୟାକୁ ଅର୍ପଣ କରିଥିବା ବିଷୟ ଠିକ୍ ଭାବରେ କୌଣସି ଗ୍ରନ୍ଥରେ ଉଲ୍ଲେଖ ନାହିଁ ।

**ଯଶୋବନ୍ତଙ୍କ ଜନ୍ମସ୍ଥାନ** :—ସେହିପରି ଯଶୋବନ୍ତଙ୍କର ଜନ୍ମସ୍ଥାନ ସମ୍ପର୍କରେ ଯେଉଁ ନାମ ସବୁ ଉଲ୍ଲେଖ କରାଯାଇଛି ସେଥିରେ ମଧ୍ୟ ପ୍ରଶ୍ନର ଅବକାଶ ରହିଛି । ପ୍ରତ୍ୟେକ ସମାଲୋଚକ ଯଶୋବନ୍ତଙ୍କ ଜନ୍ମସ୍ଥାନ ଅଡ଼ଙ୍ଗ ବୋଲି ଗ୍ରହଣ କରିଛନ୍ତି । ଏ ପର୍ଯ୍ୟନ୍ତ ସେଠାରେ ତାଙ୍କର ମଠ ବିଦ୍ୟମାନ ଥିବାରୁ ଓ ସେଠାରେ ତାଙ୍କର ଉତ୍ସବ ଓ ପର୍ବପର୍ବାଣିମାନ ନିୟମିତ ଅନୁଷ୍ଠିତ ହେଉଥିବାରୁ ଜନ୍ମସ୍ଥାନ ସମ୍ପର୍କରେ ସନ୍ଦେହର ଅବକାଶ ନାହିଁ । ପୁନଶ୍ଚ ଯଶୋବନ୍ତଙ୍କର ଜନ୍ମ ତିରୋଧାନ ପର୍ବ ଓ ବିଭିନ୍ନ ଲୀଳା ଅଡ଼ଙ୍ଗରେ

ଅନୁଷ୍ଠିତ ହୋଇଥିବା ବିଷୟ ଷଷ୍ଠୀମେଳା ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । * ତେବେ ପ୍ରଶ୍ନ ଉଠେ, ଅଢ଼ଙ୍ଗ ନାମ ସହିତ ନନ୍ଦୀ ଗ୍ରାମର ନାମୋଲ୍ଲେଖ କେତେକ ପୁସ୍ତକରେ ହେବାର କାରଣ କ'ଣ ? ଅଢ଼ଙ୍ଗ ଓ ନନ୍ଦୀ ଗ୍ରାମ ଗୋଟିଏ ସ୍ଥାନ କି ? ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ଶିବ ସ୍ୱରୋଦୟ' ପୁସ୍ତକର ମୁଖବନ୍ଧରେ ଲେଖିଛନ୍ତି—"କଟକ ଜିଲ୍ଲା ଅନ୍ତଃପାତୀ ଅଢ଼ଙ୍ଗ ନାଇଲୋ ଗ୍ରାମରେ ମହାନାୟକ ବା କ୍ଷତ୍ରିୟ କୁଳରେ ସେ ଜାତ ହୋଇଥିଲେ ।" ପୁଣି ଅଢ଼ଙ୍ଗ ନାଇଲୋ ଗ୍ରାମ କେଉଁଠି ? ପ୍ରକୃତ ପକ୍ଷେ ଅଢ଼ଙ୍ଗ ହେଉଛି ଏକ ମୌଜା ଏବଂ ନାଇଲୋ ହେଉଛି ଗୋଟିଏ ଗ୍ରାମ । ସେହିପରି ଅଢ଼ଙ୍ଗ ଗଡ଼ (ଅଢ଼ଙ୍ଗ ରାଜାଙ୍କର ଗଡ଼ ବା ଦରବାର ଯେଉଁଠି ଥିଲା) ଅନ୍ୟ ଏକ ଗ୍ରାମ । ତାହା ହେଉଛି ଯଶୋବନ୍ତଙ୍କ ଶ୍ୱଶୁର ଘର ଗ୍ରାମ । ଏ ସମ୍ପର୍କରେ କୌଣସି ଲିଖିତ ଇତିହାସ ନ ଥିଲେ ମଧ୍ୟ ଜଣାଯାଏ ଯେ ଗ୍ରାମର ପୂର୍ବ ଦିଗରେ ଏକ ବିରାଟ ପୁଷ୍କରିଣୀ ଥିଲା । ସେହି ପୁଷ୍କରିଣୀରେ ପ୍ରଚୁର ପରିମାଣରେ ପଦ୍ମଫୁଲ ଫୁଟୁ ଥିବାରୁ ତାହା ନଳିନୀ ପୁଷ୍କରିଣୀ ନାମରେ ଦୂରଦୂରାନ୍ତରେ ପରିଚିତ ଥିଲା । ସେହି ନଳିନୀ ପୁଷ୍କରିଣୀ ନାମରେ ଗ୍ରାମର ନାମ ନଳିନୀ ଗ୍ରାମ ଥିଲା । କାଳକ୍ରମେ ନଳିନୀ ଅପଭ୍ରଂଶ ହୋଇ ନାଇଲୋ ହୋଇଥିବା ସମ୍ଭବ । ଏବେ ମଧ୍ୟ ସେ ପୁଷ୍କରିଣୀ ଅବସ୍ଥିତ । ମାତ୍ର ତାହା ପୋତି ହୋଇ ଆସିବାରୁ ସେଥିରେ ଆଉ ପଦ୍ମଫୁଲ ଫୁଟୁ ନାହିଁ । ସେହି ନଳିନୀ ପୁଷ୍କରିଣୀର ନାଁ ବଦଳି ଯାଇଛି । ଲୋକେ ତାହାକୁ ନାଇଲି ପୋଖରୀ ବୋଲି କହୁଛନ୍ତି । ନନ୍ଦୀ ଗ୍ରାମ ପୁଣି କ'ଣ ? ହୁଏତ ନଳିନୀ ନାମରୁ ନନ୍ଦୀ ନାମ ଉଦ୍ଭୂତ ହୋଇଥିବ । ତେବେ ଯେଉଁମାନେ 'ଅଢ଼ଙ୍ଗ' 'ନାଇଲୋ' ବା ନନ୍ଦୀ ଗ୍ରାମର କଥା ନିଜ ପୁସ୍ତକରେ ଉଲ୍ଲେଖ କରିଛନ୍ତି ସେମାନେ ସେଇ ଗୋଟିଏ ଜାଗାକୁ ହିଁ ଲକ୍ଷ୍ୟ କରିଛନ୍ତି ।

**ତିରୋଧାନ ଦିବସ** :—ଯଶୋବନ୍ତଙ୍କ ତିରୋଧାନ ଓଢ଼ଣ ଷଷ୍ଠୀରେ ହୋଇଥିବା ଅନେକ ଗ୍ରନ୍ଥରେ ସୂଚିତ । ମାତ୍ର ଓଢ଼ଣ ଷଷ୍ଠୀ ମାର୍ଗଶିର ମାସ ଶୁକ୍ଳ ପକ୍ଷରେ ହୁଏ । ଅଧ୍ୟାପକ ଆର୍ତ୍ତ ବଲ୍ଲଭ ମହାନ୍ତି ମାଘମାସ ଶୁକ୍ଳ ଷଷ୍ଠୀ (ଓଢ଼ଣ ଷଷ୍ଠୀ) ବୋଲି ଶିବ-ସ୍ୱରୋଦୟରେ ଉଲ୍ଲେଖ କରିଥିବାରୁ ତାଙ୍କର ପରବର୍ତ୍ତୀ ଆଲୋଚକ ସୁରେନ୍ଦ୍ର ମହାନ୍ତି, ସୂର୍ଯ୍ୟନାରାୟଣ ଦାଶ ମାଘ ମାସକୁ ତାଙ୍କର ତିରୋଧାନ ମାସ ରୂପରେ ଗ୍ରହଣ କରିଛନ୍ତି । ଡକ୍ଟର ବଂଶୀଧର ମହାନ୍ତି 'ଷଷ୍ଠୀ ମେଳା'ରୁ "ମାର୍ଗଶିର ମାସ ନିଦାନ ଯିବ ହରିସ୍ମରଣ"

---

* "କ୍ଷତ୍ରିୟ କୁଳେ ଜନମ ହୋଇଲେ ନନ୍ଦୀ ଗ୍ରାମରେ ନାନା ଲୀଳା କଲେ" ।

(ଷଷ୍ଠୀମେଳା)

ମୁଁ ଯଶୋବନ୍ତ କ୍ଷତ୍ରିକୁଳେ, ଜନମ ହୋଇଅଛି ଭଲେ ।
ଅଢ଼ଙ୍ଗ ଗଡ଼ ପଶ୍ଚିମରେ, ପଶ୍ଚିମେଶ୍ୱରଙ୍କ ପଛରେ ।
ଗ୍ରାମ ପଛରେ ମଠ, ପାଇଲି ବହୁତ ସଙ୍କଟ ।"

(ଚଉତିଶି ଅଙ୍କ)

ପ୍ରମାଣ ଉଦ୍ଧାର କରି ମାର୍ଗଶିର ମାସରେ ଯଶୋବନ୍ତ ଦେହାନ୍ତ ହୋଇଥିବା ବର୍ଣ୍ଣାଇ-ପ୍ରକୃତ ପକ୍ଷରେ ଏ ପର୍ଯ୍ୟନ୍ତ ତାଙ୍କର ଶ୍ରାଦ୍ଧ ଉତ୍ସବ ମାର୍ଗଶିର ମାସ ଶୁକ୍ଳ ଷଷ୍ଠୀ ଉତ୍ସବରେ ଅନ୍ତର୍ଗ ନାଇଲେ ଗ୍ରାମସ୍ଥ ତାଙ୍କ ମଠରେ ପାଳିତ ହେଉଛି ।

**ଗୀତ ଗୋବିନ୍ଦ ଚନ୍ଦ୍ର**—ବହୁ ଆଦୃତ 'ଗୀତ ଗୋବିନ୍ଦ ଚନ୍ଦ୍ର' ପୁସ୍ତକଟିର ନାମକରଣ ସଂପର୍କରେ ଭିନ୍ନ ମତ ଥିବା ପରିଲକ୍ଷିତ ହୁଏ । ପୂର୍ଣ୍ଣ ନାରାୟଣ ଦାସ ଓ ଆର୍ତ୍ତିବଲ୍ଲଭ ମହାନ୍ତି ଏ ପୁସ୍ତକର ନାମ 'ଗୋବିନ୍ଦ ଚନ୍ଦ୍ର ଗୀତା' ଉଲ୍ଲେଖ କରିଥିବା ସ୍ଥଳେ, ସୁରେନ୍ଦ୍ର ମହାନ୍ତି ଗୀତ ଗୋବିନ୍ଦଚନ୍ଦ୍ର ରଖିଛନ୍ତି । ମାତ୍ର ବର୍ତ୍ତମାନ ବଜାରରେ ମିଳୁଥିବା ପ୍ରଫେସ୍ର କୁମାର ପଣ୍ଡାଙ୍କଦ୍ୱାରା ସଂପାଦିତ ପୁସ୍ତକର ନାମ କେବଳ 'ଗୋବିନ୍ଦ ଚନ୍ଦ୍ର' ରଖା ହୋଇଛି । ଏହି ପରିପ୍ରେକ୍ଷୀରେ ବିଭିନ୍ନ ସମାଲୋଚକ ଆଲୋଚନା ବେଳେ ଭିନ୍ନ ଭିନ୍ନ ନାମୋଲ୍ଲେଖ କରିଛନ୍ତି । ଚଳିତ ଶତାବ୍ଦୀର ତୃତୀୟ ଦଶକ ବେଳକୁ ପ୍ରକାଶିତ ଏକ ପୁସ୍ତକର ନାମ ଗୀତ ଗୋବିନ୍ଦଚନ୍ଦ୍ର" ରଖା ହୋଇଛି । ଏ ପୁସ୍ତକ ରଚନା ବେଳେ 'ଗୋବିନ୍ଦଚନ୍ଦ୍ର' ଓ ଗୀତ ଗୋବିନ୍ଦଚନ୍ଦ୍ର' ଏହି ଦୁଇଟି ନାମ ମୁଁ ବ୍ୟବହାର କରିଛି । କିନ୍ତୁ ଏହା ଗୋଟିଏ ବହିର ଉଦ୍ଦେଶ୍ୟରେ ହିଁ ଅଭିପ୍ରେତ ।

**ପଞ୍ଚସାଧକଙ୍କ ପଞ୍ଚସଖାତ୍ୱ**—ପଞ୍ଚସଖାଙ୍କ ସଂପର୍କରେ ମଧ୍ୟ ଏକାଧିକ ମତ ପ୍ରଚଳିତ ଅଛି । ଏହି ପାଞ୍ଚଜଣ ସନ୍ଥ କବି ଓ ଅନ୍ୟାନ୍ୟ ଓ ସମସାମୟିକ କବିଙ୍କ ରଚନାକୁ ଭିତ୍ତି କରି ସମାଲୋଚକମାନେ ସେମାନଙ୍କୁ ଏକ ସମସ୍ତର ବ୍ୟକ୍ତି ବୋଲି ଗ୍ରହଣ କରିଛନ୍ତି । ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର କିନ୍ତୁ ଦୁଇଟି ପ୍ରବନ୍ଧରେ ପଞ୍ଚସଖା ଧାରଣାକୁ ମିଥ୍ୟା ଓ କପୋଳକଳ୍ପିତ ବୋଲି ମତ ବ୍ୟକ୍ତ କରିଛନ୍ତି । * ଶ୍ରୀ ମିଶ୍ରଙ୍କ ଦ୍ୱିତୀୟ ପ୍ରବନ୍ଧ ପ୍ରକାଶିତ ହେବା ପରେ ଅଧ୍ୟାପକ କୃଷ୍ଣଚରଣ ସାହୁଙ୍କର "ପଞ୍ଚସଖା ପ୍ରବଞ୍ଚନା ନୁହେଁ" ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶିତ ହୋଇଛି । ● ଉକ୍ତ ପ୍ରବନ୍ଧରେ ଲେଖକ ଶ୍ରୀ ମିଶ୍ରଙ୍କ ମତକୁ ଖଣ୍ଡନ କରିବାପାଇଁ ଚେଷ୍ଟା କରିଛନ୍ତି । ଡଃ ନଟବର ସାମନ୍ତରାୟ ଶ୍ରୀ ମିଶ୍ରଙ୍କ ମତକୁ ସ୍ୱୀକାର କରିଛନ୍ତି ଓ ପଞ୍ଚସାଧକଙ୍କ ପଞ୍ଚସଖାତ୍ୱକୁ ଅସ୍ୱୀକାର କରିବା ମର୍ମରେ "ସଖାସ୍ଥାନ ପଞ୍ଚସଖା" ପୁସ୍ତକ ରଚନା କରିଛନ୍ତି । ଏପରି ଅନେକ ବିବାଦମାନ ମତ କେବଳ ଯଶୋବନ୍ତ ନୁହନ୍ତି, ସେହି ସମସ୍ତର କବି, ସାଧକମାନଙ୍କ ସଂପର୍କରେ ଶୁଣିବାକୁ ମିଳିଥାଏ । ତାହାର କାରଣ ବିଧିବଦ୍ଧ ଭାବରେ ଜୀବନୀ ରଚନାର ପରଂପରା ସେତେବେଳେ ନ ଥିଲା । ଯେଉଁ ତଥ୍ୟ

---

* ପଞ୍ଚସଖା ପରଂପରା ପରୀକ୍ଷା—ଝଙ୍କାର ୧୧ । ୧୨ - ୧୯୬୦
  ପଞ୍ଚସଖା ଏକ ପ୍ରବଞ୍ଚନା—ଡଗର ୯,୧୧,୧୨ - ୧୯୬୭

● ପଞ୍ଚସଖା ପ୍ରବଞ୍ଚନା ନୁହେଁ—ଦଗର ୯ । ୩ - ୧୯୬୭,୧୯୬୮

ଜୀବନୀକାରମାନେ ଦେଇଛନ୍ତି ତାହା ମଧ୍ୟ ଐତିହାସିକ ସତ୍ୟ ଭିତ୍ତିକ ନୁହେଁ । ତେଣୁ ଏ ପ୍ରକାର ପ୍ରମାଦ ଦେଖା ଦେଉଛି ।

**ପଞ୍ଚସଖା ଓ ସମସାମୟିକ ଦେଶର ଅବସ୍ଥା** :—ଓଡ଼ିଶାର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ପଞ୍ଚଦଶ ଶତାବ୍ଦୀ ବେଳକୁ ବିଳାସୀ ଓ ଅଯୋଗ୍ୟ ଗଙ୍ଗବଂଶର ନରପତିଙ୍କ ହାତରେ ଓଡ଼ିଶା ଯେପରି ଅବହେଳିତ ଓ ଜର୍ଜରିତ ହୋଇଥିଲା ତହିଁରୁ ମୁକ୍ତକରିବାରେ କପିଳେନ୍ଦ୍ର ଦେବଙ୍କଠାରୁ ଆରମ୍ଭକରି ତାଙ୍କର ପୌତ୍ର ପ୍ରତାପରୁଦ୍ର ଦେବଙ୍କ ପର୍ଯ୍ୟନ୍ତ ସୂର୍ଯ୍ୟବଂଶୀୟ ରାଜାମାନେ ହିଁ ସହାୟକ ହୋଇଥିଲେ । ପ୍ରତାପରୁଦ୍ରଙ୍କ ସମୟରେ ଉତ୍କଳର ରାଜନୀତିକ ଅବସ୍ଥା ସହିତ ସାଂସ୍କୃତିକ ଓ ସାହିତ୍ୟିକ ଅବସ୍ଥାର ମଧ୍ୟ ଦ୍ରୁତ ପ୍ରଗତି ସାଧିତହୋଇଥିଲା । ପୁଣି ଭାରତର ବିଭିନ୍ନ ପ୍ରାନ୍ତରରୁ ଧର୍ମ ସଂପ୍ରଦାୟମାନେ ଶ୍ରୀକ୍ଷେତ୍ରକୁ ଆସି ସ୍ୱକୀୟ ଧର୍ମ ଦର୍ଶନର ପ୍ରଭାବ ପକାଇଥିଲେ । ଏହି ସମୟରେ ଶ୍ରୀଚୈତନ୍ୟ ଓଡ଼ିଶା ଆଗମନ କରିଥିଲେ ଓ ତାଙ୍କର ଆଧ୍ୟାତ୍ମିକ ଖ୍ୟାତି ତତ୍କାଳୀନ ବହୁବ୍ୟକ୍ତିଙ୍କୁ ପ୍ରଭାବିତ କରିଥିଲା ।ତେଣୁ ଓଡ଼ିଆ କବିଗଣ ଏହାଦ୍ୱାରା ପ୍ରଣୋଦିତ ହେବା ଖୁବ୍ ସ୍ୱାଭାବିକ ଥିଲା । ଶ୍ରୀ ଚୈତନ୍ୟ ପୁରୀର ବୈଷ୍ଣବମାନଙ୍କ ସଂସ୍ପର୍ଶରେ ଆସିଥିଲେ । ଏହି ପରିପେକ୍ଷୀରେ ପଞ୍ଚସଖା ଶ୍ରୀ ଚୈତନ୍ୟଙ୍କୁ ଗୁରୁ ନ୍ୟାୟରେ ସମ୍ମାନ କରୁଥିଲେ । ଚୈତନ୍ୟ ମଧ୍ୟ ପଞ୍ଚସଖାଙ୍କୁ ଶ୍ରଦ୍ଧାକରୁଥିଲେ । ଜଗନ୍ନାଥ ଦାସଙ୍କୁ ଅତିବଡ଼ୀ ଆଖ୍ୟାରେ ନାମିତ କରିଥିଲେ । ଏ ସତ୍ତ୍ୱେ ଶ୍ରୀ ଚୈତନ୍ୟ ଓ ପଞ୍ଚସଖାଙ୍କ ଆଧ୍ୟାତ୍ମିକ ଚିନ୍ତା ଚେତନା ଓ ସାଧ୍ୟ-ସାଧନାରେ କିଛିଟା ପାର୍ଥକ୍ୟ ରହିଥିଲା । ଶ୍ରୀ ଚୈତନ୍ୟ ପୁରୀ ରହଣି ସମୟରେ ସମସାମୟିକ ସମାଜକୁ ଆଖି ଆଗରେ ରଖି ଚଳୁଥିଲେ । ପୂର୍ବୋକ୍ତ ପରିଚାଳିତ ସାମନ୍ତବାଦୀ ସମାଜରେ ଅନେକ ଦୋଷ ତ୍ରୁଟି ସତ୍ତ୍ୱେ ସେ ନୀରବ ରହିବାକୁ ହୁଏତ ଉଚିତ୍ ମଣୁଥିଲେ । ମୁକ୍ତିମଣ୍ଡପ ଜନିତ ବିଧିବିଧାନଗୁଡ଼ିକ ମନକୁ ନ ଆସିଲେ ମଧ୍ୟ ତହିଁର ବିରୋଧ କରୁ ନ ଥିଲେ । ପୁଣି ଚୈତନ୍ୟ ଓ ତାଙ୍କ ଗୋଷ୍ଠୀର ଭକ୍ତଗଣଙ୍କ ପାଖରେ ଜାତିଟା ମଧ୍ୟ ବଡ ହୋଇ ଠିଆହୋଇଥିଲା । ଆଧ୍ୟାତ୍ମିକ କ୍ଷେତ୍ରରେ ଜ୍ଞାନଠାରୁ ଭକ୍ତିକୁ ଶ୍ରେଷ୍ଠ ଆସନ ଦେଉଥିବା ସତ୍ତ୍ୱେ ଜାତି ପାଖରେ ଭକ୍ତିର ଶକ୍ତି କମ୍ପିତ ହୋଇ ଉଠିଥିଲା । ତେଣୁ ଶ୍ରୀ ଚୈତନ୍ୟଙ୍କ ଯବନ ଭକ୍ତମାନଙ୍କୁ ଜଗନ୍ନାଥ ମନ୍ଦିର ପ୍ରବେଶ କରିବାର ସୁଯୋଗ ମିଳୁ ନ ଥିଲା । ହୁଏତ ମନ୍ଦିରର ପଣ୍ଡିତ ଓ ପୂଜକମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସେ ଏ ନୀତି ଅବଲମ୍ବନ କରୁଥିଲେ । ଏଣେ ଗୌଡ଼ୀୟ ବୈଷ୍ଣବଧର୍ମଦ୍ୱାରା ରାଜାଙ୍କୁ ଦୀକ୍ଷିତ କରାଇ ରାଜପୃଷ୍ଠ ପୋଷକତା ଲାଭ କରିବାର ପ୍ରୟାସ କରୁଥିଲେ ।

ଏପରି ପରିସ୍ଥିତିରେ ପଞ୍ଚସଖା ଅନୁକୂଳ ପରିବେଶ ମଧ୍ୟରେ ଗତି କରୁନଥିଲେ । କାରଣ ଗୌଡ଼ୀୟ ଓ ଉତ୍କଳୀୟ ବୈଷ୍ଣବମାନଙ୍କ ମଧ୍ୟରେ କିଛିଟା ପାର୍ଥକ୍ୟଥିଲା । ପଞ୍ଚସଖା କେତେକ ଦିଗରୁ ଶ୍ରୀ ଚୈତନ୍ୟଙ୍କ ନୀତିକୁ ଗ୍ରହଣ କରି ପାରୁନଥିଲେ । ଶୁଣାଯାଏ

ପାଞ୍ଚଜଣଯାକ କୋଣାର୍କ ବାଲୁରେ ବସି ଏ ସଂପର୍କରେ ଆଲୋଚନା କରିଥିଲେ । ସମ୍ଭବତଃ ଗୌଡ଼ୀୟଧର୍ମ ରାଜଧର୍ମ ହୋଇଥିବାରୁ ପ୍ରକାଶ୍ୟରେ ଏହାର ବିରୋଧ କରିନ ଥିଲେ । ତେଣୁ ପଞ୍ଚସଖା ଉତ୍କଳୀୟ ବା ଗୌଡ଼ୀୟ କୌଣସି ତତ୍ତ୍ୱକୁ ସମର୍ଥନ କରୁଥିବା ବିଷୟ ପ୍ରକାଶ୍ୟରେ ଜଣାଇବାକୁ ଦେଇ ନ ଥିଲେ । ଅଥଚ କୃଷ୍ଣ ଓ ଜଗନ୍ନାଥ ଉଭୟଙ୍କୁ ଆରାଧନା କରୁଥିଲେ । ଯଶୋବନ୍ତଙ୍କ ସାଧନା ପୀଠରେ ଥିବା ମଠରେ ଅଦ୍ୟାବଧି ରାଧା-କୃଷ୍ଣ ଓ ଜଗନ୍ନାଥ ବିଗ୍ରହ ପୂଜାପାଆନ୍ତି ଏବଂ ଉଭୟଙ୍କର ପର୍ବପର୍ବାଣି ପାଳିତ ହୁଏ । ରାସପୂର୍ଣ୍ଣିମୀ, ରାଖୀପୂର୍ଣ୍ଣିମୀ, ଦୋଳପୂର୍ଣ୍ଣିମୀରେ ରାସଯାତ୍ରା, ଝୁଲଣପର୍ବ ଏବଂ ଦୋଳଉତ୍ସବମାନ ଯେପରି ପାଳିତ ହୁଏ, ସେହିପରି ମଠରେ ଅଧିଷ୍ଠିତ ଶ୍ରୀଜଗନ୍ନାଥ ବିଗ୍ରହ ସ୍ନାନ ପୂର୍ଣ୍ଣିମୀରେ ମଣ୍ଡପକୁ ଆସନ୍ତି ଓ ସ୍ନାନ କରିବାପରେ ଅଣସରରେ ରହନ୍ତି । ନେତ୍ରୋତ୍ସବରେ ବିଗ୍ରହ ରଙ୍ଗ ହୋଇ ନବଯୌବନ ବେଶ ଗ୍ରହଣ କରନ୍ତି । ଠାକୁରଙ୍କର ରଥଯାତ୍ରା ପାଳନ କରାଯାଉନଥିଲା । ମାତ୍ର କେତେ ଉତ୍ସାହୀ ବ୍ୟକ୍ତିଙ୍କ ନେତୃତ୍ୱରେ ଗ୍ରାମବାସୀମାନେ ପ୍ରାୟ ୩୦ବର୍ଷ ହେବ ରଥ ଓ ବାହୁଡ଼ା ପର୍ବ ପାଳନ କରି ଆସୁଛନ୍ତି । ଏମାନେ କେବଳ ବୈଷ୍ଣବ ନ ଥିଲେ । ସନ୍ଥ, ସାଧକ, ସଂସ୍କାରକ ଏବଂ ସାହିତ୍ୟ ରଚୟିତା ଥିଲେ । ଏମାନେ ଶ୍ରୀ ଚୈତନ୍ୟଙ୍କ ପରି ଧର୍ମ ରାଜ୍ୟରେ ଜାତିପ୍ରଥାକୁ ସ୍ୱୀକାର କରୁ ନ ଥିଲେ । ଯିଏ ଭକ୍ତ ତା'ର ସ୍ଥାନ ଭଗବାନଙ୍କର ଖୁବ୍ ନିକଟରେ । ଜଣେ ଶ୍ରେଷ୍ଠ ଭକ୍ତ ଜାତିପାଇଁ ଦୂରେଇ ହୋଇ ରହିବାକୁ ଆଦୌ ସେମାନେ ଅନୁମୋଦନ କରି ପାରୁ ନ ଥିଲେ ଏ ଦିଗରୁ ବିଚାର କଲେ ପଞ୍ଚସଖାହିଁ ତତ୍‌କାଳୀନ ସମାଜରେ ନବ ଜାଗରଣର କଥା ପ୍ରଥମେ ଚିନ୍ତା କରିଥିଲେ । ବଳରାମ ଦାସଙ୍କ ରଚିତ ଲକ୍ଷ୍ମୀପୁରାଣ ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଜାତିପ୍ରଥା ବିରୋଧରେ ଏହା ଯେପରି ଏକ ଅଭିଯାନ, ନାରୀ ସ୍ୱାଧୀନତା ସପକ୍ଷରେ ତାହା ସେହିପରି ଏକ ଉତ୍ସାହ ପ୍ରେରିତ ଆହ୍ୱାନ । 'ଚଣ୍ଡାଳ ହସ୍ତରୁ ପ୍ରସାଦ ବ୍ରାହ୍ମଣ ଖାଇବ' * ବାର୍ତ୍ତାଟି ତତ୍‌କାଳୀନ ସମାଜପାଇଁ ନିଶ୍ଚୟ ଏକ ସାହସିକ ପଦକ୍ଷେପ । ପୁଣି ଲକ୍ଷ୍ମୀଦେବୀଙ୍କ ଚରିତ୍ର କରିଆରେ ନାରୀ ଚରିତ୍ର ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶନ କରାଯାଇଛି ତାହା ଅତ୍ୟନ୍ତ ଅଭିନନ୍ଦନୀୟ । କେବଳ ସମ୍ମାନ ପ୍ରଦର୍ଶନ କରାଯାଇନାହିଁ, ନାରୀ ପାଖରେ ପୁରୁଷକୁ ସାନ କରି, ଅସମର୍ଥ ଓ ପରାଜିତ କରିଦିଆଯାଇଛି । ଲକ୍ଷ୍ମୀ ପୁରାଣର ପରିସମାପ୍ତି ଏହିପରି ହୋଇଛି, ଶ୍ରୀ ଜଗନ୍ନାଥଙ୍କୁ ମହାଲକ୍ଷ୍ମୀ ଶତଧିକାର କରିସାରିବାପରେ "କାଳୀୟ ଗଞ୍ଜନ

---

* ଚଣ୍ଡାଳ ବ୍ରାହ୍ମଣ ଯାଏ ଛୁଆଁଛୁଇଁ ହେବେ
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ
ହାଡ଼ିର ହସ୍ତୁ ବ୍ରାହ୍ମଣେ ଛଡ଼ାଇ ଖାଇବେ
ବ୍ରାହ୍ମଣେ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।

(ଲକ୍ଷ୍ମୀପୁରାଣ)

ଶୁଣି କଷ୍ଟ ନ କହିଲେ ।" ଅଥଚ ଯାଗରେ ଫେରିଯିବା ପାଇଁ ଲକ୍ଷ୍ମୀଙ୍କୁ ପ୍ରାର୍ଥନା କରିଛନ୍ତି ଏବଂ ନିଃସଂକୋଚରେ ସ୍ୱୀକାର କରିଛନ୍ତି ଯେ ଲକ୍ଷ୍ମୀଦେବୀଙ୍କ ପାଇଁ ଦୁଇଭାଇ ଜୀବନ ଧାରଣପାଇଁ ଅନ୍ନ ଗଣ୍ଡାଏ ମଧ୍ୟ ଯୋଗାଡ଼ କରିପାରି ନାହାନ୍ତି । ଜଗନ୍ନାଥ, ବଳରାମ ବଡ଼ହେଲେ ମଧ୍ୟ ଲକ୍ଷ୍ମୀଙ୍କଦ୍ୱାରା ତାଙ୍କ ଗର୍ବ ଖଣ୍ଡିତ ହୋଇଛି । ପରିଶେଷରେ ଲକ୍ଷ୍ମୀ ସତ୍ୟ କରାଇ ନେଇଛନ୍ତି । ତାଙ୍କ କଥା ନ ରହିଲେ ସେ ମନ୍ଦିରକୁ ଆଉ ଫେରିବେ ନାହିଁ । * ଯେଉଁ ସମୟରେ ବ୍ରାହ୍ମଣ ପଣ୍ଡିତମାନେ ବ୍ରାହ୍ମଣ ଜାତିକୁ ଶ୍ରେଷ୍ଠସ୍ଥାନ ଦେଉଥିଲେ । ପୁରୁଷମାନେ ପୁରୁଷକୁ ସମାଜରେ ଉଚ୍ଚ ଆସନରେ ଅଧିଷ୍ଠିତ କରାଉଥିଲେ ସେହି ସମୟରେ ଜଣେ ପୁରୁଷ ଲେଖକଙ୍କର ନାରୀ ପ୍ରତି ଏତାଦୃଶ ଉଦାର ମନୋଭାବ ନିଶ୍ଚୟ ଭାବରେ ପ୍ରଗତିଶୀଳ ଦୃଷ୍ଟିକୋଣର ସୂଚନା ଦିଏ । ବଳରାମଙ୍କ ପରି ଯଶୋବନ୍ତ ମଧ୍ୟ ଜାତିଗତ ପାର୍ଥକ୍ୟକୁ ସ୍ୱୀକାର କରୁ ନଥିଲେ । ସେଇଥି ପାଇଁ ହାଡ଼ିପାଙ୍କୁ ଗୋବିନ୍ଦଚନ୍ଦ୍ରଙ୍କର ଗୁରୁ ଭାବରେ ନିର୍ବାଚନ କରିଛନ୍ତି । ଅଚ୍ୟୁତାନନ୍ଦ ମଧ୍ୟ "ସ୍ୱାନ କର୍ମେ ସ୍ୱାନ ଜାତି ଟେକ କର୍ମେ ଟେକ" ବୋଲି କହିଛନ୍ତି । ବ୍ୟକ୍ତି, ଉଚ୍ଚ ବା ନିମ୍ନ ଜାତିର ହେଉ, ଈଶ୍ୱରଙ୍କଦ୍ୱାରା ସୃଷ୍ଟ । ☐ କୁଳ ବା ବଂଶ ଅନୁସାରେ ନୁହେଁ, କର୍ମ ଅନୁସାରେ ଜାତି ଭେଦର କଥା ଚିନ୍ତାକରିବା ନିଶ୍ଚିତଭାବେ ପ୍ରଗତିଶୀଳ ମନୋଭାବର ପରିଚାୟକ ।

ଧର୍ମ କ୍ଷେତ୍ରରେ ମଧ୍ୟ ପଞ୍ଚସଖା ନିର୍ଦ୍ଦିଷ୍ଟ କୌଣସି ମାର୍ଗକୁ ଗ୍ରହଣକରି ଅନ୍ୟମାନଙ୍କର ଧର୍ମାଚରଣକୁ ନିନ୍ଦା କରିନାହାନ୍ତି । କିମ୍ବା ନିଜ ଅବଲମ୍ବିତ ଧର୍ମମାର୍ଗକୁ ଉଚ୍ଚ ଆସନ ଦେଇ ଅନ୍ୟମାନଙ୍କ ଆଚରିତ ପଥକୁ ନ୍ୟୂନ ସ୍ଥାନ ଦେଇନାହାନ୍ତି । ଆଧ୍ୟାତ୍ମିକ କ୍ଷେତ୍ରରେ ଜଣେ ଭକ୍ତ ତା'ର ମତାନୁସାରେ ଯେ କୌଣସି ମାର୍ଗ ଅବଲମ୍ବନ କରିବାରେ କୌଣସି ବାଧାନାହିଁ ବୋଲି ସେମାନେ ବିଶ୍ୱାସ କରୁଥିଲେ । ମାତ୍ର ସେହି ମାର୍ଗ ପ୍ରତି ନିଷ୍ଠାରଖିବା ଉପରେ ସେମାନେ ଅଧିକ ଗୁରୁତ୍ୱ ଦେଉଥିଲେ । ଏମାନେ ବୁଝିଥିଲେ ନିଷ୍ଠାରହିତ ଧର୍ମାଚରଣହିଁ ସଙ୍କୀର୍ଣ୍ଣତା । ପ୍ରକୃତପକ୍ଷେ ପଞ୍ଚସଖା ଗୋଟିଏ ଦୃଷ୍ଟିରୁ ବୈଷ୍ଣବଥିଲେ, ପୁଣି ବୈଷ୍ଣବ ନ ଥିଲେ । କାୟା ସାଧକ, ପୁଣି କାୟା ସାଧକ ନୁହନ୍ତି, ବ୍ରହ୍ମବାଦୀ ଥିଲେ, କିନ୍ତୁ ଶୁଷ୍କ ଅଦ୍ୱୈତବାଦୀ ନ ଥିଲେ । ସଂସାରର ସୃଷ୍ଟିକୁ ମାୟାବୋଲି ସ୍ୱୀକାର କରୁଥିଲେ, ମାତ୍ର ମାୟାବାଦୀ ନ ଥିଲେ, ଥିଲେ ଜୀବନ ବାଦୀ । ସଗୁଣ ଓ ନିର୍ଗୁଣର ସମନ୍ୱୟକୁ ବିଶ୍ୱାସ କରୁଥିଲେ, ପିଣ୍ଡ ଭିତରେ ବ୍ରହ୍ମାଣ୍ଡକୁ ଦେଖୁଥିଲେ, ବ୍ରହ୍ମାଣ୍ଡକୁ ପିଣ୍ଡର ବିଶ୍ୱମୟରୂପ

---

* ଏତେକହି ଗୋବିନ୍ଦ ଧରିଲେ ଲକ୍ଷ୍ମୀହସ୍ତ,
ଜଗତମାତା ବୋଇଲେ ତୁମ୍ଭେକର ସତ୍ୟ । (ଲକ୍ଷ୍ମୀପୁରାଣ)

☐ ହାଡି ବୋଲି କରି ଯାହା ପୂଜିଲୁ ଅର୍ଜ୍ଜୁନ
ମୋହର ବ୍ୟକ୍ତକେ ସେହୁ ନୁହଇଟି ଭିନ୍ନ । (ଅଚ୍ୟୁତାନନ୍ଦ-କୈବର୍ତ୍ତଗୀତା)

ବୋଲି ଅନୁଭବ କରୁଥିଲେ । ପଞ୍ଚସଖା ଏକ ଅଭିନବ ସ୍ୱବାତ୍ମକ ଅର୍ଥରେ ବ୍ରହ୍ମ ଅର୍ଥାତ ପରମ ସତ୍ତାକୁ ଶୂନ୍ୟବୋଲି କହିଛନ୍ତି । ପଞ୍ଚସଖା ପ୍ରକୃତରେ ବୌଦ୍ଧ ନ ଥିଲେ କି ଶୂନ୍ୟବାଦୀ ନ ଥିଲେ । ସେମାନେ ଭକ୍ତଥିଲେ, ଜ୍ଞାନୀ ବି ଥିଲେ । * ଭକ୍ତି ଓ ଜ୍ଞାନ ଉଭୟକୁ ଗୁରୁତ୍ୱ ଦେଉଥିଲେ । ଆଧ୍ୟାତ୍ମିକତାର ଆକାଶରେ ବିଚରଣ କରିବାକୁ ହେଲେ ମନ ପକ୍ଷୀ ଦୁଇଟି ଡେଣା ନିହାତି ଦରକାର କରେ । ସେ ଦୁଇଟି ଡେଣା ହେଉଛି ଜ୍ଞାନ ଓ ଭକ୍ତି । ଏଇଥିପାଇଁ ସେମାନେ ନିଜକୁ ଶୂଦ୍ର ଭାବରେ କଳ୍ପନା କରିଥିଲେ । ବ୍ରାହ୍ମଣଠାରୁ ଶୂଦ୍ରକୁ ଉଚ୍ଚ ଆସନ ଦେବାପାଇଁ କିଂବା ସମ ଆସନରେ ଅଧିଷ୍ଠିତ କରାଇବାପାଇଁ ସେମାନେ ଶୂଦ୍ରର ପରିକଳ୍ପନା କରି ନ ଥିଲେ । ଏହାର ତାତ୍ପର୍ଯ୍ୟ ହେଉଛି—ଭଗବାନଙ୍କ ପାଖରେ ପ୍ରତ୍ୟେକ ଭକ୍ତ ହେଉଛି ଶୂଦ୍ର ଅର୍ଥାତ୍ ସେବାକାରୀ, ଉତ୍ସର୍ଗୀକୃତ, କ୍ଷୁଦ୍ରପ୍ରାଣୀ ମାତ୍ର । ପରିପକ୍ୱତମ ଓ ଉଚ୍ଚତମ ପର୍ଯ୍ୟାୟର ଭକ୍ତକୁ ଶୂଦ୍ରର ଭକ୍ତ ବୋଲି ଘୋଷଣା କରିଥିଲେ । "ଶୂଦ୍ର ଭାବର ପ୍ରତୀକ ରୂପେ ଶୂଦ୍ରର ବ୍ୟାଖ୍ୟାକରି ସାଧନା ଅର୍ଥାତ୍ ଅନ୍ତଃ ସାର୍ଥର ବାସନା ରଖିଥିବା ପ୍ରତ୍ୟେକ ବ୍ୟକ୍ତିକୁ ଏହି ଶୂଦ୍ରତ୍ୱର ହିଁ ଅଧିକାରୀ ହେବାର ବାସନା ରଖିବାକୁ ହେବ ବୋଲି ସେମାନେ ସାଧନାନୁବର୍ତ୍ତୀ ସମସ୍ତଙ୍କୁ ଉଦ୍‌ବୋଧନ ଦେଇଥିଲେ ।" ● ପୁଣି ଏମାନେ କେବଳ ସାଧକ ବା ସନ୍ଥ ନ ଥିଲେ । ଏମାନେ ଏକକାଳୀନ ସମାଜ ସଂସ୍କାରକ ଓ କବି ମଧ୍ୟ ଥିଲେ । ନିଜ ନିଜର ଅଲୌକିକ ଶକ୍ତି ବିନିଯୋଗକରି ଦୁସ୍ଥ ଲୋକଙ୍କୁ ସାହାଯ୍ୟ କରୁଥିଲେ । ବିଶେଷ ଭାବରେ ରୋଗଗ୍ରସ୍ତ ଲୋକଙ୍କୁ ରୋଗମୁକ୍ତ କରିବାରେ ସହାୟକ ହେଉଥିଲେ । ଏଣୁ ଏମାନେ ପରୋକ୍ଷଭାବରେ ସମାଜସେବୀ ଥିଲେ । ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ କରୁଥିଲେ ଓ ଆଗ୍ରହୀ ଭକ୍ତଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରୁଥିଲେ । ଶିଷ୍ୟ, ଭକ୍ତ ଓ ଜିଜ୍ଞାସୁ ପାଠକମାନଙ୍କପାଇଁ ଅସଂଖ୍ୟ ଗ୍ରନ୍ଥ ରଚନା କରୁଥିଲେ । ସେ ଗୁଡ଼ିକ ମୁଖ୍ୟତଃ ତତ୍ତ୍ୱପୂର୍ଣ୍ଣ ଧର୍ମଗ୍ରନ୍ଥ ଥିଲା । ଭଜନ ଜଣାଣ, ମାଳିକା, ପଟଳ ଇତ୍ୟାଦି ବହୁଗ୍ରନ୍ଥ ଏହି ଭକ୍ତଗଣ ରଚନା କରିଛନ୍ତି । ପୁଣି ସାଧାରଣ ଜନତାପାଇଁ ସଂସ୍କୃତ ଭାଷାରେ ରଚିତ ପୁରାଣମାନ ଓଡ଼ିଆରେ ଅନୁବାଦ କରିଛନ୍ତି । ଏମାନଙ୍କ ରଚିତ ଅସଂଖ୍ୟ ଗ୍ରନ୍ଥ ମଧ୍ୟରେ କେତେକ ରଚନାରେ କବିତ୍ୱର ପରିଚୟ ମିଳେ । ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କର ଜଗମୋହନ ରାମାୟଣ, ଲକ୍ଷ୍ମୀପୁରାଣ, ଯଶୋବନ୍ତ ଦାସଙ୍କ 'ଗୀତ ଗୋବିନ୍ଦ ଚନ୍ଦ୍ର' ଓ ବଣସ୍ତୋତ୍ର ବୋଲିରେ ଭକ୍ତିଭାବ ସହିତ କବିତ୍ୱର ସ୍ଫୁରଣ ହୋଇଥିବା ଲକ୍ଷ୍ୟକରାଯାଏ ।

---

* ୧) ଶ୍ରୀ ଚିତ୍ତରଞ୍ଜନ ଦାସ—ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା-ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା-୧୯୮୧-ପୃ ୧୩୯

୨) ଡଃ ରାଧାକାନ୍ତ ମିଶ୍ର—ସନ୍ଥ ସାହିତ୍ୟର ତୁଳନାତ୍ମକ ଆଲୋଚନା ଏଷଣା ପଞ୍ଚବିଂଶ ଖଣ୍ଡ : ଡିସେମ୍ବର, ୧୯୯୨ ପୃ ୧୦୨

● ଚିତ୍ତରଞ୍ଜନ ଦାସ —ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଭୁବନେଶ୍ୱର-୧୯୮୧-ପୃ ୧୪୩

ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟାନ୍ୟ ସ୍ୱଗଜଣଙ୍କ ପରି ଯଶୋବନ୍ତ ମଧ୍ୟ ଜଣେ ସାଧକ ଓ କବି ଥିଲେ । ସେ 'ପ୍ରେମଭକ୍ତି ବ୍ରହ୍ମଗୀତା,' 'ଶିବ ସ୍ୱରୋଦୟ' 'ବଣବୋଳ ବୋଲି' 'ମଣ୍ଡ ବୋଲି' 'ଆତ୍ମ ପରଚେ ଗୀତା' 'ଗୀତ ଗୋବିନ୍ଦ ଚନ୍ଦ୍ର' 'ପଦ୍ମବନ ରାସ' ମାଳିକା ଓ ଭଜନମାନ ରଚନା କରିଛନ୍ତି । ମାତ୍ର ସେଗୁଡ଼ିକ ମଧ୍ୟରୁ ଅନେକ ରଚନା କେବଳ ଯୋଗ, ସାଧନା ଓ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ଯେଉଁ କେତୋଟି ସୃଷ୍ଟିରେ କବିତ୍ୱର ପରିଚୟ ମିଳେ ସେଗୁଡ଼ିକ ହେଉଛି, ଗୀତ ଗୋବିନ୍ଦଚନ୍ଦ୍ର, ବଣବୋଳ ବୋଲି, ଏବଂ କେତେକ ଜଣାଣ ଓ ଭଜନ । ଯଶୋବନ୍ତଙ୍କ କବିତ୍ୱର ଆକଳନ ବେଳେ ଏ କେତୋଟି ରଚନା ଅବଶ୍ୟ ବିଚାର୍ଯ୍ୟ ।

**କବିତ୍ୱର ମୂଲ୍ୟାୟନ** :— ଯଶୋବନ୍ତଙ୍କ 'ଗୀତ ଗୋବିନ୍ଦଚନ୍ଦ୍ର'କୁ ତାଙ୍କ ରଚନାବଳୀ ମଧ୍ୟରେ ସର୍ବଶ୍ରେଷ୍ଠ କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲେ ମଧ୍ୟ କବିତ୍ୱର ପରାକାଷ୍ଠା ଏଥିରେ ପ୍ରଦର୍ଶିତ । ତେଣୁ ଏହା ଏକ ଜନପ୍ରିୟ ରଚନା । ନାଥଧର୍ମର ମୁଖ୍ୟ ସ୍ୱର ଏଥିରେ ଅନୁରଞ୍ଜିତ । ଗୋବିନ୍ଦଚନ୍ଦ୍ର ବିଷୟବସ୍ତୁ ଉପରେ ଅବଲମ୍ବିତ ରଚନାମାନ ବିଭିନ୍ନ ଭାଷାରେ ରଚିତ ହୋଇଥିବା ଜଣାଯାଏ । ବଙ୍ଗୀୟ ପଣ୍ଡିତମାନେ ରାଜା ଗୋବିନ୍ଦ-ଚନ୍ଦ୍ର ବଙ୍ଗ ଦେଶର ବ୍ୟକ୍ତି ବୋଲି ଦାବି କରନ୍ତି । ଗୋବିନ୍ଦ ଚନ୍ଦ୍ର ଜାତ ହୋଇଥିବା ପଟିକେରା ରାଜବଂଶକୁ ଆଧୁନିକ ତିପୁରା ବୋଲି ସେମାନେ ପରିକଳ୍ପନା କରିଛନ୍ତି । କିନ୍ତୁ ଏହାର ଐତିହାସିକତାର କୌଣସି ପ୍ରମାଣ ମିଳେ ନାହିଁ । ଓଡ଼ିଆ ଗୋବିନ୍ଦଚନ୍ଦ୍ର ବଙ୍ଗଳାରେ ଗୋପୀଚନ୍ଦ୍ର ବା ଗୋପୀଚାନ୍ଦ ଭାବରେ ପରିଚିତ । ପୁଣି ଗୋବିନ୍ଦ ଚନ୍ଦ୍ରଙ୍କ ମାତା, ମୁକ୍ତା ଦେଈଙ୍କ ପରିବର୍ତ୍ତେ ବଙ୍ଗଳାରେ ମୈନାବତୀ ବା ମୈନାମତୀ ରୂପେ ବର୍ଣ୍ଣିତ । ଓଡ଼ିଆରେ ରଚିତ ଗୀତ ଗୋବିନ୍ଦଚନ୍ଦ୍ର ସହିତ ବିଷୟବସ୍ତୁ ତଥା ଚରିତ୍ରଗତ ସାମ୍ୟ ପରିଲକ୍ଷିତ ହେଲେ ହେଁ ଏହା ଓଡ଼ିଆ ଗୋବିନ୍ଦଚନ୍ଦ୍ରର ପୂର୍ବବର୍ତ୍ତୀ ରଚନା ନୁହେଁ । କାରଣ ଯଶୋବନ୍ତଙ୍କ ରଚିତ ଗୀତ ଗୋବିନ୍ଦଚନ୍ଦ୍ର ଷୋଡ଼ଶ ଶତାବ୍ଦୀର ହୋଇଥିବା ସ୍ଥଳେ ଦୁର୍ଲ୍ଲଭ ମଲ୍ଲିକଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀରେ ଗୋବିନ୍ଦ-ଚନ୍ଦ୍ରଙ୍କ ସନ୍ନ୍ୟାସ ସଂପର୍କୀୟ ରଚନା ସର୍ବପ୍ରଥମେ ବଙ୍ଗଳା ଭାଷାରେ ରଚିତ ହୋଇଥିଲା । ଏତଦ୍‌ବ୍ୟତୀତ କବି ସୁକୁର ମାମୁଦ, ଭବାନୀ ଦାସ ମଧ୍ୟ ବଙ୍ଗଳାରେ ଗୋପୀଚାନ୍ଦେର ଗାନ ରଚନା କରିଛନ୍ତି । ତେଣୁ ଯଶୋବନ୍ତଙ୍କ ଦ୍ୱାରା ଓଡ଼ିଆରେ ଗୀତ ଗୋବିନ୍ଦଚନ୍ଦ୍ର ରଚିତ ହେବାପରେ ତାହାର ପ୍ରଭାବରେ ବଙ୍ଗଳା ଭାଷାରେ ରଚନା କରା ହୋଇଥିବା ସମ୍ଭବ । ଆଉ ମଧ୍ୟ ଓଡ଼ିଶାର ଅନ୍ୟ କେତେଜଣ କବି ଗୋବିନ୍ଦଚନ୍ଦ୍ର କଥାବସ୍ତୁକୁ ଅବଲମ୍ବନ କରି ରଚନାମାନ ସୃଷ୍ଟି କରିଛନ୍ତି । ଯୋଗେନ୍ଦ୍ର ଦୈବଜ୍ଞ ବିପ୍ର 'ଟୀକା ଗୋବିନ୍ଦଚନ୍ଦ୍ର' ରଚନା କରିଛନ୍ତି । ଉଦ୍ଧବ ଦାସ ନାମରେ ଆଉ ଜଣେ କବି ଏହି କଥାବସ୍ତୁ ଆବଲମ୍ବନରେ ଟୀକା

'ଗୋବନ୍ଦଚନ୍ଦ୍ର' ରଚନା କରିଥିବା ମଧ୍ୟ ଜଣାଯାଏ । ଏଥିରୁ ମନେହୁଏ ଷୋଡ଼ଶ ଶତାବ୍ଦୀର ବହୁପୂର୍ବରୁ ସମ୍ଭବତଃ ୧୦-୧୨ ଶତାବ୍ଦୀ ମଧ୍ୟରେ ଗୋବନ୍ଦଚନ୍ଦ୍ର ପୂର୍ବ ଭାରତର କୌଣସି ରାଜବଂଶରେ ଜାତ ହୋଇଥିଲେ ଓ ସନ୍ନ୍ୟାସ ବ୍ରତ ଅବଲମ୍ବନ କରିଥିଲେ । ତାହା ଓଡ଼ିଶାବାସୀଙ୍କ ମନରେ ଗଭୀର ରେଖା ଅଙ୍କନ କରିଥିଲା । ତେଣୁ ଯଶୋବନ୍ତଙ୍କ ଗୀତ ଗୋବନ୍ଦଚନ୍ଦ୍ର ରଚିତ ହୋଇ ସାରିଲାପରେ ମଧ୍ୟ ସେହି ଗୋଟିଏ ବିଷୟବସ୍ତୁକୁ ନେଇ ଏକାଧିକ ପୁସ୍ତକ ରଚିତ ହେଲା, ଏବଂ ଆଜି ମଧ୍ୟ ଓଡ଼ିଶାର ଯୋଗୀମାନେ କେନ୍ଦରା ବଜାଇ ଗୋବନ୍ଦଚନ୍ଦ୍ର ସଂପର୍କୀୟ ଗୀତ ବୋଲୁଥିବାର ଦେଖାଯାଏ । ନେପାଳରୁ ମିଳିଥିବା ସମଧର୍ମୀ ଏକ ଗାଥା ସଂସ୍କୃତ ଭାଷାରେ ରଚିତ ହୋଇଥିବା ଜଣାଯାଏ । ଏହା ଚତୁର୍ଦ୍ଦଶ ବା ପଞ୍ଚଦଶ ଶତାବ୍ଦୀର ରଚନା । ରାଜପୁତ୍ର ରାଜସିଂହାସନ ତ୍ୟାଗକରି ସନ୍ନ୍ୟାସ ଗ୍ରହଣ କରିବା ଘଟଣା ଏଥିରେ ବର୍ଣ୍ଣିତ । ଏହି ରାଜପୁତ୍ରଙ୍କର ନାମ ଅଚଳସେନ ଓ ମାତାଙ୍କର ନାମ ବନ୍ଦ୍ରାକଣୀ ଏବଂ ଏ ରାଜପୁତ୍ର ମଧ୍ୟ ମାତାଙ୍କ ଅନୁରୋଧରେ ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ । * ଓଡ଼ିଆ, ବଙ୍ଗଳା ଓ ସଂସ୍କୃତ ବ୍ୟତୀତ ପଞ୍ଜାବୀ, ହିନ୍ଦୀ, ମରାଠୀ ଭାଷାରେ ମଧ୍ୟ ଗୋବନ୍ଦଚନ୍ଦ୍ର ରଚନା ଦୃଷ୍ଟିଗୋଚର ହୁଏ । ଗୁଜୁରାଟ, ବିହାର, ମହାରାଷ୍ଟ୍ର, ସିନ୍ଧୁ ପ୍ରଦେଶରେ ମଧ୍ୟ ରାଜପୁତ୍ର ଯୋଗୀ ହେବା ଲୋକକଥା ପ୍ରଚଳିତ ଥିବା ଶୁଣାଯାଏ । ଏବେ ଊନବିଂଶ ଓ ବିଂଶ ଶତାବ୍ଦୀରେ ମଧ୍ୟ ଗୋବନ୍ଦଚନ୍ଦ୍ର ସଂପର୍କୀୟ ରଚନା ଲେଖା ଯାଉଛି । ରଘୁନାଥ ପାଣିଗ୍ରାହୀ (୧୮୧୫) ରାଜା ଗୋବନ୍ଦଚନ୍ଦ୍ର ଗଦ୍ୟ ଭାଷାରେ ରଚନା କରିଛନ୍ତି । ଊନବିଂଶ ଶତାବ୍ଦୀର ଲେଖକ ଅନନ୍ତ ବାମନ ବରର୍ଵେ ଗୋବନ୍ଦଚନ୍ଦ୍ର ନାଟକ ମରାଠୀ ଭାଷାରେ ରଚନା କରିଛନ୍ତି । ଏ ପର୍ଯ୍ୟନ୍ତ ଗୋବନ୍ଦ ଚନ୍ଦ୍ର ଗାଥାର ଲୋକପ୍ରିୟତା ହ୍ରାସ ପାଇ ନାହିଁ ।

କାହାଣୀ ଦୃଷ୍ଟିରୁ ବିଚାରକଲେ ଜଣାଯାଏ, ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିବାହିଁ ଲେଖକଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଏ ସଂସାର ହେଉଛି ମିଛ, ମାୟା ଓ ସ୍ୱାର୍ଥ ଜଡ଼ିତ । ଷଡ଼ରିପୁ ମାନବକୁ ଘେରି ରହିଛି । ଶାଶ୍ୱତ ସୁଖ ପାଇବାକୁ ହେଲେ ଏଗୁଡ଼ିକୁ ଦମନ କରିବାକୁ ହେବ । ଏ ଷଡ଼ରିପୁ ବ୍ୟତୀତ 'କାଳ' ପୁଣି ପ୍ରାଣୀକୁ ବେଶୀ କଷ୍ଟଦିଏ । ଆକସ୍ମିକ ଆଁସି ହାବୁଡ଼ି ଯାଏ । ପାଚିଲା ଫଳକୁ ରଖି କଞ୍ଚା ଓ କଷି ଫଳକୁ ନେଇ ଚାଲିଯାଏ । କାଳଯମ ଦେଉଥିବା ଏହି କଷ୍ଟରୁ ଉତ୍ତୀର୍ଣ୍ଣ ହେବାକୁ ହେଲେ ଯୋଗମାର୍ଗହିଁ ଅବଲମ୍ବନୀୟ । ସେଥିପାଇଁ ବଂଗ ଦେଶର ତିପୁଚନ୍ଦ୍ର ରାଜାଙ୍କ ରାଣୀ ମୁକୁତାଦେଈ, ପୁତ୍ର ଗୋବନ୍ଦ ଚନ୍ଦ୍ରଙ୍କୁ ସନ୍ନ୍ୟାସ ବ୍ରତ ଗ୍ରହଣ କରିବାପାଇଁ ପ୍ରବର୍ତ୍ତାଇଛନ୍ତି । କାରଣ ଗୋବନ୍ଦ ଚନ୍ଦ୍ର ଅତ୍ୟନ୍ତ ବିଳାସୀ ଥିଲେ । ସେଥିରେ ପୁଣି ବିଧାତା ଧନ ଦୌଲତ ସହିତ ଦେଇ-ଥିଲା ଅନନ୍ୟ ସୌନ୍ଦର୍ଯ୍ୟ । ନିଜର ଧନ ସମ୍ପତ୍ତି ପ୍ରତିପତ୍ତି ଓ ରୂପର କାନ୍ତିରେ ସେ ନିଜେ

---

* ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ଆଦିପର୍ବ

ବିମୋହିତ ହେଉଥିଲେ । ଏପରି ମାତା ମୁକ୍ତା ଦେଈଙ୍କ ଦୃଷ୍ଟିର ଅନ୍ତରାଳରେ ରହି ନଥିଲା । ତେଣୁ ସେ ପୁତ୍ରକୁ ତାଙ୍କ ଯୋଗୀ ହେବାକୁ ନିର୍ଦ୍ଦେଶ ଦେଇଥିଲେ । ଅତି ଅଳ୍ପଅଳ ରାଜପୁତ୍ର ଯୋଗୀ ହେଲେ । କାନ୍ଧରେ ଝୋଲିକନ୍ଥା, ଲାଉଥାଳ ପକାଇ ଓ ସର୍ବାଙ୍ଗରେ ବିଭୂତି ମଣ୍ଡିତହୋଇ ପାଞ୍ଚ ଦୁଆରକୁ ଗଲେ ଭିକ୍ଷା ମାଗିବାକୁ । ଯଶୋବନ୍ତ ଏପରି ଗୋଟିଏ ବିଷୟ ବସ୍ତୁ ନିର୍ବାଚନ କରିବାର ତାତ୍ପର୍ଯ୍ୟ କ'ଣ ? ସେତେବେଳକାର ଧାର୍ମିକ ଅବସ୍ଥାରୁ ମନେହୁଏ, ସେହି ସମୟ ପାଇଁ ଯୋଗ, ସାଧନା ଓ ତ୍ୟାଗର କିଛି ପ୍ରୟୋଜନୀୟତା ଥିଲା । ପଞ୍ଚସଖା ତଥା ଯଶୋବନ୍ତଙ୍କ ସମୟରେ ସହଜଯାନୀ ବୌଦ୍ଧ ପରଂପରାର କୌଣସି ପରିବର୍ତ୍ତନ ହୋଇ ନ ଥିଲା । ବ୍ୟଭିଚାରଗ୍ରସ୍ତ ସହଜ ସାଧନା ତଥାପି ଲୋକ ଜୀବନରେ ଦେଖା ଦେଉଥିଲା । ଗୋରଖ ନାଥ ଓ ଅନ୍ୟାନ୍ୟ ନାଥ ଗୁରୁମାନେ ଯୋଗସାଧନା ମାଧ୍ୟମରେ ଲୋକମାନଙ୍କୁ ସଂଯମ ଶିକ୍ଷାଦେବାର ପ୍ରୟାସ କରୁଥିଲେ । ଲୋଇ, ବାଉଲ ପ୍ରଭୃତି ସହଜଯାନୀ ମଧ୍ୟ ନାଥମାନଙ୍କ ଧର୍ମୀୟ ଚିନ୍ତାଧାରା ଦ୍ୱାରା ପ୍ରଣୋଦିତ ହୋଇ ଯୋଗମାର୍ଗ ଅବଲମ୍ବନ କରିଥିଲେ । ଏ ଦିଗରେ ସାରଳା ଦାସ ଯେଉଁ ସାମାନ୍ୟ ପ୍ରୟାସ କରିଥିଲେ ପଞ୍ଚସଖା ତାହାକୁ ସୁଦୃଢ଼ କରିବାରେ ଯତ୍ନ କଲେ । ମନେହୁଏ, ଯଶୋବନ୍ତ ଏହି କାରଣରୁ ଯୋଗମାର୍ଗୀ ଗୋବିନ୍ଦ ଚନ୍ଦ୍ରଙ୍କ ସନ୍ନ୍ୟାସ ଗ୍ରହଣକୁ ବିଷୟ ବସ୍ତୁ ଭାବରେ ଗ୍ରହଣକରିଛନ୍ତି । ପୁନଶ୍ଚ ବର୍ଣ୍ଣନା ମାଧ୍ୟମରେ କବି ଗୋବିନ୍ଦଚନ୍ଦ୍ରଙ୍କର ଯେପରି କୃଚ୍ଛ୍ର ସାଧନାର ଚିତ୍ର ପ୍ରଦାନ କରିଛନ୍ତି ତାହା ଉତ୍କଳୀୟଙ୍କଠାରେ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିବାରେ ସାହାଯ୍ୟ କରିପାରେ । କାରଣ ଯୋଗ ସାଧନାଦ୍ୱାରା ଶାରୀରିକ ଓ ମାନସିକ ବିକାଶ ହୁଏ । ଆସାଧ୍ୟ ସାଧିତ ହୁଏ । ମାତ୍ର ରାଜା ଗୋବିନ୍ଦଚନ୍ଦ୍ରଙ୍କୁ ଯୋଗୀ କରିବାର ତାତ୍ପର୍ଯ୍ୟ କ'ଣ ? ଏହାଦ୍ୱାରା ସେ ହୁଏତ ସଂଯମର ଚୂଡ଼ାନ୍ତ ନିଦର୍ଶନ ପ୍ରଦାନ କରିଛନ୍ତି । ମାତ୍ର ଏହାର ଅନ୍ତରାଳରେ ମଧ୍ୟ କବିଙ୍କର ଅନ୍ୟ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଥିବା ମନେହୁଏ । କପିଳେନ୍ଦ୍ର ଦେବଙ୍କଠାରୁ ଆରମ୍ଭକରି ପ୍ରତାପରୁଦ୍ର ଦେବଙ୍କ ପର୍ଯ୍ୟନ୍ତ ଉତ୍କଳ ଯେପରି ପ୍ରଗତି ପଥରେ ଅଗ୍ରଗତି କରୁଥିଲା ପ୍ରତାପରୁଦ୍ର ଦେବଙ୍କ ଜୀବନର ଶେଷ ସମୟରେ ପର୍ଯ୍ୟୁଷିତ ଅବସ୍ଥାରେ ପହଞ୍ଚିଲା । ଚୈତନ୍ୟଙ୍କ ଆଗମନ ପରେ ଓଡ଼ିଶାର ଆଧ୍ୟାତ୍ମିକ ବାତାବରଣ ଏପରି ବଦଳି ଯାଇଥିଲା ଯେ ତାଙ୍କ ପ୍ରଚାରିତ ଧର୍ମ ରାଜ ଧର୍ମରେ ପରିଣତ ହୋଇଥିଲା । ରାଜା କେବଳ ସେ ଧର୍ମରେ ଦୀକ୍ଷିତ ହୋଇଥିଲେ ତାହା ନୁହେଁ, କ୍ରମେ ସେ ରାଜ୍ୟ ଶାସନ ପ୍ରତି ଉଦାସୀନ ହେଲେ । ଫଳରେ ବିଜୟ ନଗର ରାଜ୍ୟର ସମ୍ରାଟ କୃଷ୍ଣଦେବ ରାୟ ଓଡ଼ିଶାର କିଛି ଅଂଶ ଅଧିକାର କରିନେଲେ । ପ୍ରତାପରୁଦ୍ରଦେବଙ୍କ ପୁତ୍ର ବୀରଭଦ୍ର ଏଥିରେ ଅପମାନିତ ହୋଇ ଆତ୍ମହତ୍ୟା କଲେ । ପ୍ରତାପରୁଦ୍ରଦେବ ଶେଷରେ ସନ୍ଧି ସ୍ଥାପନ କଲେ ଓ କୃଷ୍ଣଦେବ ରାୟଙ୍କୁ ବହୁ ଧନରତ୍ନ ସହିତ ନିଜ କନ୍ୟାକୁ ବିବାହ କରାଇଲେ । ଏତିକି ନୁହେଁ, ରାଜ୍ୟ ମଧ୍ୟ ହତଶ୍ରୀ ହେବାକୁ ଆରମ୍ଭ କଲା । ରାଜ୍ୟର ଏହି ଅବସ୍ଥାରେ ସମାଜ ସଚେତନ-କବି ଯଶୋବନ୍ତ ହୁଏତ ମର୍ମାହତ ହୋଇଥିଲେ । ମାତ୍ର

ରାଜାଙ୍କ ଶରୀରରେ ନିଜର ମର୍ମ୍ମବାଣୀ ପ୍ରକାଶ କରିବା ହୁଏତ ଉଚିତ ମନେ କରୁ ନ-ଥିଲେ । ଗୋବିନ୍ଦ ଚନ୍ଦ୍ର ସନ୍ନ୍ୟାସୀ ହୋଇଯିବା ଓ ଯୋଗ ସାଧନକରି ସ୍ୱରାଜ୍ୟକୁ ଫେରିବାବେଳେ ରାଜ୍ୟର ଯେଉଁ ହୀନପ୍ରଭ ଓ ହତଶ୍ରୀ ଅବସ୍ଥା ଅବଲୋକନ କରିଛନ୍ତି ତାହା ପ୍ରକୃତରେ କବିଙ୍କ ନିଜ ରାଜ୍ୟର ପ୍ରତିବିମ୍ବବୋଲି ମନେହୁଏ । ସ୍ୱାଭାବିକ ବର୍ଣ୍ଣନା ସହିତ ନିରନ୍ଧ ଭଂଗୀରେ ଯେପରି ପ୍ରକାଶିତ ହୋଇଛି ସେଥିରୁ କବିଙ୍କର ସମାଜ ସଚେତନତା ସହିତ କବି ଦୃଷ୍ଟିର ପରିଚୟ ମିଳେ । *

ଆଧ୍ୟାତ୍ମିକତାର ଦ୍ୱାହିରେ ଦେଶକୁ ନାରଖାର କରିବାର ଯଥାର୍ଥତା କବି ଉପଲବ୍ଧି କରୁ ନ ଥିଲେ । ଯଶୋବନ୍ତ ସନ୍ଥ ଓ ସାଧକ ଥିଲେ । ତଥାପି ସେ ସଂସାରୀ ଥିଲେ । ବରଂ ସେ ବ୍ରହ୍ମଚର୍ଯ୍ୟଠାରୁ ଗାର୍ହସ୍ଥ୍ୟ ଧର୍ମକୁ ଅଧିକ ସମ୍ମାନ ଦେଉଥିଲେ । ସାଧନ ମାର୍ଗରେ ପରିବାର ପାଦର ବେଡି ହୋଇ ନ ପାରେ । ଯଶୋବନ୍ତଙ୍କ କ୍ଷେତ୍ରରେ ମଧ୍ୟ ତାହା ହୋଇଛି । ପରିବାରକୁ ଅବହେଳା କରୁ ନ ଥିଲେ କିଂବା ଅବହେଳା କରିବାକୁ ପୁଣ୍ୟ କାର୍ଯ୍ୟ ବୋଲି ମନେ କରୁ ନ ଥିଲେ । ପରିବାରର ସାଧାରଣ ଇଚ୍ଛାକୁ ମଧ୍ୟ ପୂରଣ କରିବା ପାଇଁ ଚେଷ୍ଟା କରୁଥିଲେ । ତେଣୁ ପତ୍ନୀଙ୍କର ଆମିଷ ଖାଇବାପରି ସାଧାରଣ ଇଚ୍ଛାକୁ ମଧ୍ୟ ସେ ଏଡ଼ାଇ ଦେଇ ପାରି ନଥିଲେ । ଯଶୋବନ୍ତ ପରିବାରକୁ ଛାଡ଼ି ନଥିଲେ, ଜଗନ୍ନାଥଙ୍କୁ ମଧ୍ୟ ଛାଡ଼ି ନଥିଲେ । ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ ଦୁହେଁ ଜୀବନର ସାଥୀ ହୋଇଥିଲେ । ଲକ୍ଷ୍ମୀ-ଦତ୍ତାତ୍ରେୟଙ୍କ ପରି । କିନ୍ତୁ କେହି କାହାର ସପତ୍ନୀ ନଥିଲେ । ଅନ୍ତଃକରଣରେ କର୍ମ-ଯୋଗକୁହିଁ ସେ ଅଧିକ ସମ୍ମାନ ଦେଉଥିଲେ । ତେଣୁ ଗୋବିନ୍ଦଚନ୍ଦ୍ରଙ୍କର ରାଜ୍ୟ ତ୍ୟାଗକରି ସନ୍ନ୍ୟାସ ବ୍ରତ ଅବଲମ୍ବନକୁ ସେ ପସନ୍ଦ କରି ପାରି ନାହାନ୍ତି । ରାଢ଼ିଆଣୀ ମୁଖରେ ଯେଉଁ କଥାଗୁଡ଼ିକ କୁହାଇଛନ୍ତି ତାହା ଯଶୋବନ୍ତଙ୍କର ମର୍ମ୍ମବାଣୀ । କିଂନ୍ତୁ ଅତି ସତର୍କତାର ସହିତ ଏପରି କାବ୍ୟିକ ରୂପ ଦେଇଛନ୍ତି ଯେ ବାହ୍ୟତଃ ଏହାକୁ ଦୁଇଜଣ ସାଧକ ଓ ସାଧିକାଙ୍କର କଥୋପକଥନ ବୋଲି କେବଳ ବୁଝିବାକୁ ହେବ । ସାଧନା ନିମନ୍ତେ ଜଣେ ଯୋଗୀର ମନରେ ଅହଂକାର କଦାପି ସ୍ଥାନ ପାଇବା ଉଚିତ୍ ନୁହେଁ । ରାଢ଼ିଆଣୀ ସହିତ କଥାବାର୍ତ୍ତା ହେବା ମାଧ୍ୟମରେ ଗୋବିନ୍ଦଚନ୍ଦ୍ରଙ୍କ ମନରେ ସ୍ଥାନ ପାଇଥିବା ସାମାନ୍ୟ ଅହଂକାର ଦୂରହୋଇଛି ସତ, ମାତ୍ର ପ୍ରକୃତ ପକ୍ଷେ ଗୋବିନ୍ଦ ଚନ୍ଦ୍ରଙ୍କ ଠାରୁ ରାଢ଼ିଆଣୀକୁ ଅର୍ଥାତ୍ ସନ୍ନ୍ୟାସଠାରୁ କର୍ମଯୋଗକୁ ଶ୍ରେଷ୍ଠ ଆସନ ଦେବାହିଁ ଯଶୋବନ୍ତଙ୍କର ମୂଳ ଲକ୍ଷ୍ୟ । ଗୋବିନ୍ଦ ଚନ୍ଦ୍ର ପରିଶେଷରେ ଭୈରବୀର ଉକ୍ତିର ସାରବତ୍ତା ହୃଦୟଙ୍ଗମ କରି ନୀରବ ରହିଛନ୍ତି ।

---

* ଦେଖିଲେ କଟକ ହୋଇଅଛି ନାରଖାର, ଘରମାନ ଭାଙ୍ଗିବାରୁ ବନସ୍ତ ଆକାର
ମୃଗ ଯେ ସମ୍ବର ଗଣ୍ଡା ବହୁତ ଅଛନ୍ତି, କୂପ, ବାମ୍ପି, ପୁଷ୍କରଣୀ ସବୁ ଅସରନ୍ତି ।
ଦେଖିଲି କଟକ ତା'ର ନାରଖାର ହସି, ପାଚେରି ଅଟ୍ଟାଳି ମେଢ଼ ଭାଙ୍ଗି ଯାଇଅଛି
(ଗୋବିନ୍ଦ ଚନ୍ଦ୍ର)

ଗୁରୁ ହାଡ଼ିପା ଗୋବିନ୍ଦଚନ୍ଦ୍ରଙ୍କୁ ଯୋଗ ମାର୍ଗରେ ପରିଚାଳିତ କରିବା ନିମନ୍ତେ ବିଭିନ୍ନ ପରୀକ୍ଷାର ସମ୍ମୁଖୀନ କରାଇଛନ୍ତି । ତେଣୁ କିଛିଦିନ ପାଇଁ କୈବର୍ତ୍ତୀ ଘରେ ଛାଡ଼ି ଗୁରୁ ଅନ୍ୟତ୍ର ଚାଲି ଯାଇଛନ୍ତି । ଗୋବିନ୍ଦ ଚନ୍ଦ୍ର ଦେଖିଲେ କୈବର୍ତ୍ତୀ ରାତି ପାହାନ୍ତାରୁ ଉଜାଗର ହୋଇ ଖଇ ଭାଜେ । ଏବଂ ଧାନ ଛଡ଼ାଇ ଖଇବିକା କାର୍ଯ୍ୟ କରେ । ପୁଣି ତିନି ସହସ୍ର ଛେଳି ଓ ଅସଂଖ୍ୟ ଦୁହାଳିଆ ଗାଈ ମଧ୍ୟ ରଖିଛି । ଅମାରରେ ଭରଣ ଭରଣ ଧାନ ଭରପୂର ହୋଇ ରହିଛି । ବାହାର ବାଗରେ ମଧ୍ୟ ଷାଠିଏ ଭରଣ ଧାନ ପଡ଼ି ରହିଥାଏ । କୈବର୍ତ୍ତୀ ତିନିଶହ ଅଶୀବର୍ଷର ବୃଦ୍ଧା ହେଲେ ମଧ୍ୟ ତରୁଣୀ ନାରୀଠାରୁ ଅଧିକ ଶକ୍ତି ସଂପନ୍ନା । କର୍ମରେ ବ୍ୟସ୍ତଥାଇ ଭୋଜନ, ଶୟନ ପାଇଁ ମଧ୍ୟ ସେ ସମୟ ପାଏନାହିଁ । ସେଥିପାଇଁ ତା'ର ଦୁଃଖ ନ ଥାଏ । ଗୋବିନ୍ଦ ଚନ୍ଦ୍ର ବୁଢ଼ୀ କାର୍ଯ୍ୟ କଳାପ ଦେଖି ଥରେ ପ୍ରଶ୍ନକଲେ । ଏତେ ଧନ ସଂପତ୍ତି ସତ୍ତ୍ୱେ ପୁଣି ଏତେ ଲୋଭ କ'ଣ ପାଇଁ ? ବୁଢ଼ୀ ପୁଣି ସନ୍ତାନହୀନା । ତୁଳନାତ୍ମକ ଭାବରେ ଗୋବିନ୍ଦଚନ୍ଦ୍ର କହିଛନ୍ତି — ବଙ୍ଗ ଦେଶର ରାଜା ଗୋବିନ୍ଦଚନ୍ଦ୍ର ଏତେ ଧନ ଦୌଲତ ଓ ରାଜସିଂହାସନର ଲୋଭ ଛାଡ଼ି ଯୋଗୀ ହୋଇପାରିଲା କିପରି ? କୈବର୍ତ୍ତୀ ଯୁକ୍ତି କରିଛି, ଗୋବିନ୍ଦଚନ୍ଦ୍ରଠାରୁ ସେ ଅଧିକ ତପୀ । କାରଣ ଗୋବିନ୍ଦଚନ୍ଦ୍ର ସଂସାରକରି ଅନେଶ୍ୱତ ରାଣୀ ରାଜ୍ୟବାସୀ ସମସ୍ତଙ୍କୁ ଅନାଥକରି ଯୋଗୀ ହୋଇଗଲେ । ଅନ୍ୟମାନଙ୍କ ମନରେ କଷ୍ଟଦେଇ ତପ ଆଚରଣ କରିବା କେଉଁ ପୁଣ୍ୟ କାର୍ଯ୍ୟ ଅବା ! ସମସ୍ତଙ୍କ ନିଶ୍ୱାସ ତା' ଉପରେ ପଡ଼ିବ । ଧନ ଅର୍ଜନକରି ଦାନକରିବା ଅଧିକ ପୁଣ୍ୟମୟ କାର୍ଯ୍ୟ । ରାଜା ଗୋବିନ୍ଦଚନ୍ଦ୍ର ଦେଶ ବୁଲି ବୁଲି ଭିକ୍ଷା ମାଗେ । ମାତ୍ର ମତେ ଯିଏ ମାଗେ ମୁଁ ଖୁସି ମନରେ ଦାନ କରେ । ମାଗିବା ଓ ଦେବା ମଧ୍ୟରେ ଦାନ କରିବା ନିଶ୍ଚୟ ମହତ କାର୍ଯ୍ୟ । * ଯଶୋବନ୍ତ ନାଥ ଧର୍ମର ଭିକ୍ଷା ବୃତ୍ତିଠାରୁ କର୍ମଯୋଗକୁ ଅଧିକ ଗୁରୁତ୍ୱ ଦେଇଛନ୍ତି ।

---

* ମୋତେହୁଁ ଗୋବିନ୍ଦଚନ୍ଦ୍ର ହୋଇବ କି ତପୀ,
ବୁଲି ବୁଲି ଦେହ କ୍ଷୀଣ ହୋଇଲା ଅଦ୍ୟାପି ।
ପରେ ପ୍ରତି ଆଗ ଭିକ୍ଷା ଦେବ କେ ନ ଦେବ
କୁଟୁମ୍ବ ନିଶ୍ୱାସ ତାର ଉପରେ ପଡ଼ିବ ।
ମୁହିଁ ବହୁ କଷ୍ଟପାଇ ଅରଜଇ ଧନ,
ଯିଏ ମାଗେ ତାହାକୁ ହିଁ ଦିଏଁ ଅନ୍ନଦାନ ।
ଦେବା ଯେ ମାଗିବା ଦୁଇ କଥା ସମ କର,
ଦେବାଲୋକ ଦେହ ଅନ୍ତେ ବସେ ସ୍ୱର୍ଗପୁର ।
ପୃଥ୍ୱୀ ବୁଲି ରାଜା ନ ପାଇବ ଫଳ ଯେତେ,
ଗୃହ କର୍ମରେ କାରଣ ଲଭିବି ମୁଁ ତେତେ ।

**ଯଶୋବନ୍ତଙ୍କର ମାନବୀୟ ଦୃଷ୍ଟିକୋଣ :**—ଯଶୋବନ୍ତ କେବଳ କର୍ମଯୋଗ ଉପରେ ଗୁରୁତ୍ୱ ଦେଇ ନାହାନ୍ତି । କେତେକ ରଚନାଠାରେ ତାଙ୍କର ମାନବୀୟ ଦୃଷ୍ଟିକୋଣ ମଧ୍ୟ ପ୍ରକାଶିତ ହୋଇଛି । ତାଙ୍କର ଅନ୍ୟାନ୍ୟ ରଚନା କେବଳ ଆଧ୍ୟାତ୍ମିକ ତତ୍ତ୍ୱ ଉପରେ ପର୍ଯ୍ୟବସିତ ହୋଇଥାଇ ପାରେ । ମାତ୍ର ଗୋବିନ୍ଦଚନ୍ଦ୍ର କାବ୍ୟଟି ଅନ୍ୟାନ୍ୟ ରଚନାଠାରୁ ପୃଥକ୍ । କବି ଏଥିରେ ରାଣୀ ଶ୍ୱେଦମା, ଗୋଦମା ଓ ମୁକୁତା ଦେଇ ଚରିତ୍ରମାନଙ୍କରେ ହୃଦୟର ଆବେଗ ଓ ବିଳାପର ଚିତ୍ର ଯେପରି ଅଙ୍କନ କରିଛନ୍ତି ତହିଁରୁ ତାଙ୍କର ମୋକ୍ଷ ଅପେକ୍ଷା ଜୀବନ ପ୍ରତି ଶ୍ରଦ୍ଧାଳୁ ମନୋଭାବ ପ୍ରକଟିତ ହୁଏ । ପୁଣି ବର୍ଣ୍ଣନାର ସ୍ୱାଭାବିକତା ପାଠକ ପ୍ରାଣରେ ଆବେଦନ ସୃଷ୍ଟି କରେ । ଗୋବିନ୍ଦଚନ୍ଦ୍ର ଯୋଗୀ ହୋଇ ଯିବାପାଇଁ ସ୍ଥିର ସିଦ୍ଧାନ୍ତ ଗ୍ରହଣ କଲେ; କିନ୍ତୁ ପ୍ରାଣସମା ପତ୍ନୀ ଶ୍ୱେଦମା, ଗୋଦମାଙ୍କଠାରୁ ଅନୁମତି ନେଲେ ନାହିଁ, ବରଂ ତାଙ୍କ ଅଜ୍ଞାତରେ ଯୋଗୀ ହୋଇ ଗୃହତ୍ୟାଗୀ ହେବାର ସିଦ୍ଧାନ୍ତ ଗ୍ରହଣ କରି ନଗର ବାହାରେ ଭସ୍ମବିଲେପିତ ହୋଇ ଯୋଗୀ ବେଶରେ ଉପବେଶନ କରିଛନ୍ତି । ଆକସ୍ମିକ ଭାବରେ ଏ ମର୍ମନ୍ତୁଦ ଖବର ଶ୍ୱେଦମା, ଗୋଦମା ପାଇଛନ୍ତି ଜନୈକ ମୁଦ୍‌ଗୁଲିଠାରୁ । ସାଧାରଣ ନାରୀର ଯାହା ପ୍ରତିକ୍ରିୟା ହେବା ସ୍ୱାଭାବିକ ତାହାହିଁ ହୋଇଛି । * ସେମାନେ କାଟିଲା ବୃକ୍ଷ ପ୍ରାୟ ମୂର୍ଚ୍ଛାଗତ ହୋଇ ତଳେ ପଡ଼ିଛନ୍ତି । ପୁଣି ଦାସୀମାନଙ୍କ ଯତ୍ନରେ ଚେତନା ଫେରିପାଇ ଧାଇଁ ଯାଇଛନ୍ତି ଗୋବିନ୍ଦଚନ୍ଦ୍ରଙ୍କ ପାଖକୁ, ଯେଉଁଠି ରାଜା ଯୋଗୀ ବେଶରେ ଉପବିଷ୍ଟ ଥିଲେ । ରାଣୀ ଦୁହେଁ ଓ ତାଙ୍କ ସହିତ ଅନେକ ପରିବାର ରାଜାଙ୍କ ପାଖକୁ ଯାଇଁ ଶ୍ୱେଦନ କରିଛନ୍ତି ଏବଂ କାତରଭାବରେ ଅନୁରୋଧ କରିଛନ୍ତି, ଗୃହତ୍ୟାଗ ନ କରିବା ପାଇଁ । ମାତ୍ର ରାଜା, ରାଣୀଙ୍କ ମୁଖ ଦର୍ଶନ ମଧ୍ୟ କରି ନାହାନ୍ତି । ତଳକୁ ଚାହିଁ କହିଛନ୍ତି—ନଗରକୁ ଫେରିଯାଅ ଓ ରାଣୀ ମୁକୁତା ଦେଇଙ୍କୁ ସେବା କରି ଦିନ କଟାଅ । ଏଥିରେ ରାଣୀ ଦୁହେଁ ଆହୁରି ଉତ୍‌କ୍ଷିପ୍ତ ହୋଇଛନ୍ତି ଏବଂ ସିଧା ସଳଖ ରାଜାଙ୍କୁ ଓ ତାଙ୍କ ଗୁରୁ ହାଡ଼ିପାଙ୍କୁ ଗାଳି ବର୍ଷଣ କରିଛନ୍ତି । କୋଡ଼ିଏ ବର୍ଷ ବୟସରେ ରାଜା ଗୋବିନ୍ଦଚନ୍ଦ୍ର ଷୋଳବର୍ଷର ରାଣୀଙ୍କୁ ଛାଡ଼ି ଚାଲିଯିବା ଯେ ଘୋର ଅନ୍ୟାୟ ତାହା ସେମାନେ ଦର୍ଶାଇଛନ୍ତି । ରାଜାଙ୍କ ସାଙ୍ଗରେ ଯିବା ପାଇଁ ଅଳି କରିଛନ୍ତି । ମହାଯୋଗୀ ଶିବଙ୍କ ପାଖରେ ପାର୍ବତୀ ରହି ତାଙ୍କ ଯୋଗରେ ବାଧା ସୃଷ୍ଟି ନ କରି ବରଂ ସାହାଯ୍ୟ କରୁଥିବାର ଦୃଷ୍ଟାନ୍ତ ଦେଇଛନ୍ତି । ମାତ୍ର ଗୋବିନ୍ଦଚନ୍ଦ୍ର କେଉଁଥିରେ ହେଲେ ଭୁଲି ନାହାନ୍ତି । ରାଣୀ ଦୁହେଁ ତେଣୁ ଅଭିଶାପ ଦେଇଛନ୍ତି ଯେ ଆଶାଦେଇ ଯିଏ ନିରାଶ କରେ ସେ ତପୀ ନୁହେଁ, ମହାପାପୀ । ତଥାପି ତାଙ୍କୁ

---

* "ମୂଳରୁ ଛେଦିଲେ ଯେସନ୍ତେ ତରୁ ତଳେ ପଡ଼େ,
କେଶବାସ ଅସମ୍ଭାଳ ହୃଦୟ ଆକୁଳେ ।" (ଗୋବିନ୍ଦଚନ୍ଦ୍ର)

କ୍ଷମା ଦେବ ନାହିଁ । ନଷ୍ଟସ୍ତ୍ରୀ ଦଣ୍ଡିବ ବୋଲି ଅଭିଶାପ ଦେଇଛନ୍ତି । ✱ ରାଜା ନିଜ ସିଦ୍ଧାନ୍ତରେ ଅଟଳ । ବରଂ ବିରକ୍ତ ହୋଇ କହୁଛନ୍ତି, ତମେ ମର ବା ବଞ୍ଚ ସେଥିରେ ମୋର କିଛି ସମ୍ପର୍କ ନାହିଁ । ଧନ ସମ୍ପତ୍ତି ସ୍ପୃହିଲେ ଯେତେ ଇଚ୍ଛା ନେତେ ନେଇପାର, କିମ୍ବା ଭିନ୍ନ ଘର କରି ତହିଁରେ ରହିପାର । ହାଡ଼ିଘରେ ପଶିଲେ ମଧ୍ୟ ଚିନ୍ତା ନାହିଁ । ଯଦି ମଦନ ପୀଡ଼ା ଅସହ୍ୟ ହେଉଛି ତେବେ ସ୍ୱେଚ୍ଛାରତ କର କିମ୍ବା ମନ୍ଦିରରେ ସମ୍ପ୍ରଦା ହୋଇପାର । ✱ ସାଧାରଣ ମଣିଷର ଉକ୍ତିପ୍ରତ୍ୟୁକ୍ତି ପରି ଏମାନଙ୍କର ଯେପରି ବାକ୍ୟ ବିନିମୟ ହୋଇଛି ତହିଁରୁ କବିଙ୍କର ବାସ୍ତବବାଦୀ ଦୃଷ୍ଟିକୋଣ ହିଁ ସୂଚିତ ହୁଏ । ପୁଣି ତତ୍କାଳୀନ ସମାଜରେ ପ୍ରଚଳିତ ପ୍ରଥା ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷିତ ହୁଏ । ସେତେ-ବେଳେ ଶ୍ରୀମନ୍ଦିରରେ ଦେବଦାସୀ ନୃତ୍ୟକୁ ବାଧ୍ୟବନ୍ଧ ଭାବରେ ପ୍ରଚଳିତ କରିବା ପାଇଁ ପ୍ରତାପରୁଦ୍ର ଦେବ ପ୍ରଯତ୍ନ କରିଥିଲେ । ଏଥିପାଇଁ ଶ୍ରୀଚୈତନ୍ୟ ଓ ସ୍ୱୟଂ ରାମାନନ୍ଦ ରାଜାଙ୍କୁ ପ୍ରୋତ୍ସାହିତ ତଥା ପ୍ରରୋଚିତ କରିଥିଲେ । ଏହା କିନ୍ତୁ ଏକ ନିନ୍ଦିତ ପ୍ରଥା ଭାବରେ ଗୃହୀତ ହୋଇଥିବା ଅନୁମିତ ହୁଏ । କାରଣ ଏହାକୁ ଶ୍ରୀ ଚୈତନ୍ୟଙ୍କ ସହଜିଆ ଗୁପ୍ତ ସାଧନାର ଅନ୍ୟତମ ରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଜାଙ୍କଠାରୁ ଏପରି ଅଶ୍ଳୀଳ ଉକ୍ତି ଶୁଣି ଯେ କେହି କ୍ଷୁବ୍ଧ ହେବା ସ୍ୱାଭାବିକ । ରାଣୀ ସ୍ୱୟଂ ଗୁରୁ ହାଡ଼ିପାଙ୍କୁ ତେଣୁ ଭର୍ତ୍ସନା କରିବାକୁ ଲାଗିଲେ । ● ଯେଉଁ ଗୁରୁର ପ୍ରବର୍ତ୍ତନାରେ ରାଜପୁତ୍ର ଯୋଗୀ ହେଲେ ତାହାର

---

✱ ହେମନ୍ତ ସମୟେ ରାଜା ଦେଶାନ୍ତର ଗଲେ,
ଦଇବ ପୁରୁଷ ତତେ ନ ସହିବ ଭଲେ ।

× × ×

ଆଶା ଆଉ ନିରାଶ କରନ୍ତି ଯେଉଜନ
ମହାପାପୀ ସଙ୍ଗେକରେ ନରକ ଗମନ । (ଗୋବିନ୍ଦଚନ୍ଦ୍ର)

✱ ମଦନ ବାଣକୁ ଯେବେ ନ ପାରିବ ସହି
ସ୍ୱେଚ୍ଛାରତ କରାଇବ ପତିଣୀ ହୁଇ
ଅତହିଁ ଅଜ୍ଞାନ ଯେବେ ହୋଇବାକ ମନ,
ଦେଉଳେ ସମ୍ପ୍ରଦା ତୁମ୍ଭେ ହୁଅଗୋ ବହନ । (ଗୋବିନ୍ଦଚନ୍ଦ୍ର)

● ସେବମା ବୋଇଲେ କୋପେ ପ୍ରଜ୍ୱଳିତ ହୋଇ,
ଆରେରେ ହାଡ଼ିପା ଯେତେ କର୍ମ କଲୁ ତୁହି ।
ତୋହର ମୁଣ୍ଡରେ ବଜ୍ର ପଡ଼ୁରେ ପାମର,
ଯମ ତତେ ଠାବ ଦେଉ ରୌରବ ନର୍କର ।

ଉପରେ ସମସ୍ତ ଅଭିଶାପ ବର୍ଷଣ କଲେ ଏବଂ ରାଗର ଚରମ ଅବସ୍ଥାରେ ଉପନୀତ ହୋଇ ନିଜର ପିନ୍ଧିଥିବା ଶଙ୍ଖା ନିଜେ ହାତରୁ ଖୋଲିଦେଲେ । ରାଣୀଦ୍ୱୟ ସାଧାରଣ ଇତର ନାରୀତୁଲ୍ୟ ଆଚରଣ କରିଛନ୍ତି । ରେଢ଼ମା, ଗୋଦମା ଓ ଅନ୍ୟାନ୍ୟ ଶବ୍ଦ ନାରୀଙ୍କର ଅଭିଶାପ ଗୁରୁ ହାଡ଼ିପାଙ୍କ ଉପରେ ପଡ଼ିବ, ଯାହାଦ୍ୱାରା ତାଙ୍କର କାଳେ କାଳେ ଏ ପୃଥିବୀରୁ ମୁକ୍ତି ମିଳିବ ନାହିଁ । ମୃତ୍ୟୁପରେ ସେ ମୁକ୍ତି ପରିବର୍ତ୍ତେ ରୌରବ ନର୍କକୁଣ୍ଡ ଯିବେ । ଏପରି କହି ରାଣୀ ଦୁହେଁ ବିକଳ କ୍ରନ୍ଦନ କରି ପାଷାଣ ଉପରେ ପଡ଼ିଲେ । ପର ମୁହୂର୍ତ୍ତରେ ସେମାନଙ୍କର କ୍ରୋଧ ଜାତ ହୋଇଛି ଶାଶୂ ମୁକ୍ତା ଦେଈଙ୍କ ଉପରେ । ସେଇ ହିଁ ପ୍ରଥମେ ଗୋବିନ୍ଦଚନ୍ଦ୍ରଙ୍କୁ ଯୋଗୀ ହେବାକୁ କହିଛନ୍ତି । ତେଣୁ ଏମାନଙ୍କର ରାଗ ମାତା ମୁକ୍ତା ଦେଈଙ୍କ ଉପରେ ପଡ଼ିଛି । ପୁଅକୁ ଯୋଗୀ କରି ରାଣୀ ନିଜେ ରାଜ୍ୟ ଶାସନ କରିବେ । କିନ୍ତୁ କାହାପାଇଁ ଏ ରାଜ୍ୟ ? କ'ଣ ହେବ ଏ ସବୁ ରାଣୀଙ୍କର ? ପୁଣି ନିଜେ ଜଣେ ନାରୀ ହୋଇ ମଧ୍ୟ ନାରୀର ଅନ୍ତର୍ବ୍ୟଥା ବୁଝି ପାରିଲେ ନାହିଁ କିପରି ? ● କ୍ରୋଧର ସମସ୍ତ ବିଷ ଉଦ୍‌ଗାରଣ କରିସାରିବା ପରେ ରାଣୀ ଦୁହେଁ ନିରୁପାୟ ହୋଇ ଶେଷ ଅସ୍ତ୍ର

---

ନର୍କ ଆଶ୍ରେ କରି ତୋ ସର୍ବଦା ଯାଉ ଦିନ
ନୁହଁ ତୁ ମୁକତ ପୃଥ୍ୱୀ ଥିବ ଯେତେଦିନ ।

× × × ×

ରାଜାର କୁମାରୀ ଆମ୍ଭେ ଶତ ସପତଣୀ,
ସବୁର ନିଶ୍ୱାସ ପଡ଼ୁ ତୋହର ମୂର୍ଦ୍ଧ୍ନା ।
କୁଳଦୀପ ଲିଭାଇ ଅନ୍ଧାର କଲୁ ଘର
ରାଜା ଆଉ ରାଣୀ ରାଣ୍ଡ କଲୁ ତୁ ନିକର ।
ଯେତେ ବୋଲି ପାଷାଣ ଉପରେ ଯାଇଁ ପଡ଼ି
ହସ୍ତରୁ କାଢିଲେ ଶଙ୍ଖା ସ୍ୱର୍ଣ୍ଣ ଖଡୁ ଚୁଡ଼ି ।
ଧାଡକାରେ ପରିବାସ୍ଥ ଧଇଲେକ ତୋଳି,
କେଶବାସ ଅସମ୍ଭାଳ ହୃଦରେ ବିକଳ । (ଗୋବିନ୍ଦଚନ୍ଦ୍ର)

● ଭଲ ସେ ଶାଶୂ ଅଟନ୍ତି ପୁର ପୁରଜନ ।
ଯୋଗୀ କରି ଦେଉଛନ୍ତି ସ୍ନେକଇ ନନ୍ଦନ ।
କାହାଯେନ ରାଜ୍ୟ ସେ କରିବ ମହାଦେଈ,
ଆମ୍ଭେ ଶୋକ କଲେ ତାକୁ ଚିନ୍ତା ନ ମାତଇ ।
ନାରୀମାନଙ୍କ ବେଦନା ସେ ନ ପାରନ୍ତି ଜାଣି,
ସବୁ ଅଂଗ ସ୍ନେକତ ନୁହଇଁ ଭିନ୍ନ ପୁଣି ।

(ଗୋବିନ୍ଦଚନ୍ଦ୍ର)

ପ୍ରୟୋଗ କରିଛନ୍ତି । ସେ ଯୋଗୀ ହୁଅନ୍ତୁ କିମ୍ବା ଗୃହତ୍ୟାଗ କରି ଭିକ୍ଷାନ୍ନରେ ଜୀବନ ଯାପନ କରନ୍ତୁ ସେଥିପାଇଁ ମଧ୍ୟ ଚିନ୍ତା ନାହିଁ । ଏମାନେ ମଧ୍ୟ ରାଜାଙ୍କ ସହିତ ସନ୍ନ୍ୟାସିନୀ ହୋଇ ପାଖେ ପାଖେ ରହିବେ । ପୁଣି ସେମାନେ ସଂକଳ୍ପବଦ୍ଧ ଯେ ସାଧିକା ଭାବରେ ସମସ୍ତ ନୀତି ନିୟମ ପାଳନ କରିବେ । କେବଳ ସେବା କରିବା ବ୍ୟତୀତ ଅନ୍ୟ କୌଣସି ଆବେଗଗତ ସମ୍ପର୍କ ରାଜାଙ୍କ ସହିତ ରହିବ ନାହିଁ । ସେମାନେ ସ୍ପଷ୍ଟ ଭାବରେ କହିଛନ୍ତି, "ଶଯ୍ୟା ଛାଡ଼ି ଆନ ଠାରେ ଶୁଇବୁ ରମଣୀ" ଏ ପ୍ରସ୍ତାବରେ ମଧ୍ୟ ରାଜା ରାଜି ହେଲେ ନାହିଁ । ବରଂ ସେମାନଙ୍କୁ କହିଲେ "ତୁମ୍ଭଙ୍କୁ ଘେନିଣ ଆମ୍ଭେ ଗଲେ ଦେଶାନ୍ତରେ/ଯୋଗ ପଥ ଅପ୍ରାପତ ହୋଇବ ମୋହରେ/ତୁମ୍ଭେ ଯେ ମଦନ ବାଣ ନ ପାରିବ ସହି/ବିଜୁଳି ପବନ କାହିଁ ହସ୍ତେ ଧରି ହୋଇ ।" ଗୋବିନ୍ଦଚନ୍ଦ୍ର ବିଭିନ୍ନ ପ୍ରକାର କଥା କହି ରାଣୀ ଦ୍ୱୟଙ୍କୁ ଭୁଲାଇବାକୁ ଚେଷ୍ଟା କରିଛନ୍ତି ସିନା ସେମାନଙ୍କୁ ବୁଝିବାକୁ ଚେଷ୍ଟା କରି ନାହାନ୍ତି । କିନ୍ତୁ ବୈଦମା, ଗୋଦମା ଜୀବନଧର୍ମୀ, ବାସ୍ତବ ଅଭିମୁଖୀ ଦୁଇଟି ଚରିତ୍ର । ଏହା ତାଙ୍କର ବିଳାପ, ପ୍ରଳାପ ଓ ବିଭିନ୍ନ ପ୍ରକାର କାର୍ଯ୍ୟକଳାପରୁ ସୂଚିତ ।

ମୁକୁତା ଦେଈ ସମସ୍ତ ପ୍ରଲୋଭନକୁ ଏଡ଼ାଇ ଦେଇ ପୁଅକୁ ଯୋଗୀ କଲେ । କିନ୍ତୁ ଗୋବିନ୍ଦଚନ୍ଦ୍ରଙ୍କୁ ଗୁରୁଙ୍କ ପାଖରେ ଛାଡ଼ି ଆସିଲାବେଳେ ପୁଣି ସାଧାରଣ ଜନନୀର ଦୁର୍ବଳତା ତାଙ୍କୁ ଆବୋରି ବସିଲା, ଆଖିରୁ ଲୁହ ବୋହିଲା, ମନରେ ଦୁଃଖ ହେଲା । ସେ ଭୁଲ କରିଛନ୍ତି ବୋଲି ମନେକଲେ, * ପୁଅକୁ ଛାଡ଼ି ଆସି ମନ ଏପରି ଅସ୍ଥିର ହେଲା ଯେ ଅର୍ଦ୍ଧରାତ୍ରି ସମୟରେ ସେ ଯାଇଁ ପୁଅ ପାଖରେ ପହଞ୍ଚି ଯାଇଛନ୍ତି । ହାଡ଼ିପା ଏହା ଦେଖି ପ୍ରଶ୍ନ କରିଛନ୍ତି, ପୁଅକୁ ଫେରାଇ ନେବାକୁ ମନ ଅଛି କି ? ତେବେ ଯୋଗୀ ବେଶ ପରିତ୍ୟାଗ କରି ସେ ଗୃହକୁ ପ୍ରତ୍ୟାବର୍ତ୍ତନ କରୁ । ହାଡ଼ିପା, ମୁକୁତା ଦେଈଙ୍କୁ କହିଛନ୍ତି,

---

* ପୁତ୍ରକୁହିଁ ଯୋଗୀକରି ମୁକୁତା ଜନନୀ,
ଅସମ୍ଭାଳେ ନୟନରୁ ବହୁଅଛି ପାଣି ।
କିସ ପାଇଁ ସ୍ୱେ କୁବୁଦ୍ଧି କଲି ମୁହିଁ ନାସ୍ତି,
ଏକଇର ବଳା ମୋର ହେଲା ତପସ୍ୱୀ ।
ଦଶମାସ ଗର୍ଭେଧରି ହେଲି ଅପୁତ୍ରିକ
ଭୁଲି ଭାସିଗଲି ମୋର ହୋଇଲି ନିରଷ୍ଠ ।
ଦଇବ ପୁରୁଷ ସ୍ୱେହା ଝୁରୁଛି ପୁଣି,
ମାତା ପୁତ୍ର ଭିନ୍ନ ଭିନ୍ନ କରାଇଲୁ ଆଣି ।
ବଙ୍ଗ ରାଜ୍ୟ ସମ୍ପତ୍ତି ମୋ କେ ଭୋଗ କରିବ,
ମୁହିଂ ସେ ଗୋବିନ୍ଦ ମନ କଲି ଉଦବେଗ ।

(ଗୀତ ଗୋବିନ୍ଦଚନ୍ଦ୍ର)

ଅତି ନିର୍ଗୁଣ ପନ୍ଥା ରୁ ବୋଲିକି ନ ଜାଣୁ । "ଗୁଣ୍ଡିଲି ମୁଣ୍ଡାଁସ କନ୍ଥା ଲେଉଟାଇ ଆଣୁ ।
× × ଜାଣୁ ଜାଣୁ କଟେଗା ବଣାହେଉ ମହାଦେଇ । ପୁତ୍ରକୁ ମୁର୍ଚ୍ଛିଣ ଶୋକକରୁ କାନ୍ଦିପାଇଁ ।" ମାତୃ ହୃଦୟର ବ୍ୟାକୁଳତା ତଥାପି ଦୂର ହୋଇ ପାରିନି । ସେ ପ୍ରତ୍ୟୁତ୍ତରରେ କହିଛନ୍ତି, ମୁଁ ଗର୍ଭଧାରୀ, ଗୋବିନ୍ଦ ମୋର ଏକଇର ବଳା । ବଙ୍ଗ ଦେଶ ଶୂନ୍ୟକରି ଆଜିଠାରୁ ସେ ଯୋଗୀହୋଇ ଚାଲିଯିବ । ତାକୁ ଦେଖିବା ମୋ ପାଇଁ ସାତସପନ ହେବ । ଆଜି ତନିକ ଆଖି ପୂରାଇ ଦେଖିଥାଏ କି ନା । ମୁକ୍ତା ଦେଇ ସାଧିକା ହେଲେ ମଧ୍ୟ ଶୋକାତୁର ଜନନୀର ମାନସିକ ପ୍ରତିଛବି କେତେକାଂଶରେ ପ୍ରକାଶ ପାଇଛି ।

**ଚରିତ୍ର :—** ଗୀତି ଗୋବିନ୍ଦଚନ୍ଦ୍ର ଗାଥା କାବ୍ୟରେ କବି ଅଧିକ ଗୁଡ଼ିଏ ଚରିତ୍ରର ଉପସ୍ଥାପନା କରିନାହାନ୍ତି । ମୁଖ୍ୟ ଚରିତ୍ର ଭାବରେ ଗୋବିନ୍ଦଚନ୍ଦ୍ର, ମୁକ୍ତା ଦେଇ ଓ ଗୁରୁ ହାଡ଼ିପାଙ୍କୁ ଗ୍ରହଣ କରାଯାଇପାରେ । ଜୀବନ ସଂବେଦୀ ଚନ୍ଦ୍ରାଧାର ସ୍ଥଳ ବିଶେଷରେ ପ୍ରକାଶିତ ହୋଇଥିଲେ ହେଁ ପ୍ରଧାନ ଚରିତ୍ରଗୁଡ଼ିକ ମୁଖ୍ୟତଃ ସାଧନ ମାର୍ଗର ଅଭିଯାତ୍ରୀ ।

ଗୋବିନ୍ଦଚନ୍ଦ୍ର ସେହିପରି ଏକ ଚରିତ୍ର । ଯିଏ କେବଳ ଜଣେ ନିଷ୍ଠାପର ସାଧକ ନୁହନ୍ତି । ବାଧ୍ୟପୁତ୍ର, ବିଶ୍ୱସ୍ତ ଶିଷ୍ୟ ଓ ଦୟାବନ୍ତ ରାଜା ମଧ୍ୟ । ସନ୍ନ୍ୟାସବ୍ରତ ଗ୍ରହଣ ପୂର୍ବରୁ ତାଙ୍କ ମନରେ ସାମାନ୍ୟ ଅନଗ୍ରହ ପ୍ରକାଶ ପାଇବା ବ୍ୟତୀତ ଅନ୍ୟତ୍ର, ସବୁଠାରେ ସେ ଜଣେ ଚରମ ଆଦର୍ଶବାଦୀ ଚରିତ୍ର ଭାବରେ ଚିତ୍ରିତ । ଜୀବନର ପ୍ରାଥମିକ ଅବସ୍ଥାରେ ସେ ଥିଲେ ଜଣେ ବିଳାସୀ ରାଜା । ସେ ଶହେ ପତ୍ନୀ ଭୋଗ କରୁଥିଲେ । ନିଜର ଶାରୀରିକ ସୌନ୍ଦର୍ଯ୍ୟରେ ବିମୋହିତ ହେଉଥିଲେ ଓ ଧନସଂପତ୍ତି ସହ ରାଜ୍ୟବାସୀଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା, ଦୟା, ଭକ୍ତି, ପ୍ରୀତି ଥିବାରୁ ଆତ୍ମତୃପ୍ତି ଲାଭକରୁଥିଲେ । ସେଥିପାଇଁ ମାତା, ପୁତ୍ରକୁ ଯୋଗୀ ହେବାପାଇଁ ପ୍ରବର୍ତ୍ତାଉଥିବାବେଳେ ତାଙ୍କ ମନରେ ପ୍ରଶ୍ନ ଉଠିଛି, ସନ୍ନ୍ୟାସବ୍ରତ ଗ୍ରହଣକରି ଗୃହତ୍ୟାଗୀ ହେବାର ପ୍ରୟୋଜନୀୟତା ବା କ'ଣ ? ସେ ସର୍ବଗୁଣସମ୍ପନ୍ନ ଜଣେ ଧାର୍ମିକ ପୁରୁଷ । ତାଙ୍କପ୍ରତି କାଳର କୌଣସିପ୍ରକାର ଶାସ୍ତିବିଧାନ ଆସି ନ ପାରେ । ତେଣୁ ଯୋଗୀ ହେବାପାଇଁ ପ୍ରଥମେ ସେ ଅନିଚ୍ଛା ପ୍ରକାଶ କରିଛନ୍ତି । କିନ୍ତୁ ସେ ଜଣେ ବାଧ୍ୟପୁତ୍ର ହୋଇଥିବାରୁ ମାତାଙ୍କର ଇଚ୍ଛାକୁ ମାନି ନେଇଛନ୍ତି । ପ୍ରକୃତ ପକ୍ଷରେ ସେ ନିଜର ଇଚ୍ଛା ବିରୁଦ୍ଧରେ ଏହାକୁ କେବଳ ଗ୍ରହଣ କରି ନାହାନ୍ତି । ସଂସାରର ଅଳୀକତାକୁ ହୃଦୟଙ୍ଗମକରି ମାତାଙ୍କ ଇଚ୍ଛାକୁ ନିଜ ଇଚ୍ଛାରେ ପରିଣତ କରିଛନ୍ତି । ସେଥିପାଇଁ ସନ୍ନ୍ୟାସବ୍ରତକୁ ନିଷ୍ଠାର ସହ ପାଳନ କରିବାରେ ସେ ସକ୍ଷମ ହୋଇ ପାରିଛନ୍ତି । ସନ୍ନ୍ୟାସ ଗ୍ରହଣ ପରେ ମନ ଆଉ ପଛକୁ ଫେରିନାହିଁ । ପୁଣି ବାଡ଼ି ତାଟି ଖଟୁଥିବା ହାଡ଼ିପା ତାଙ୍କର ଗୁରୁ ହେବେ ବୋଲି ମାତା ନିର୍ଦ୍ଦେଶ ଦେଇଛନ୍ତି । ସେଥିପାଇଁ ମଧ୍ୟ ତାଙ୍କ ମନର ଦ୍ୱିଧାକୁ ସେ ଦମନକରି ତାଙ୍କୁ ଗୁରୁ ଭାବରେ ଗ୍ରହଣ କରି ନେଇଛନ୍ତି । ହେଲେ ମଧ୍ୟ

ତାଙ୍କ ପ୍ରତି ନିଜଭାବ ମନକୁ ସ୍ପର୍ଶ କରିନାହିଁ । ସେ ଥିଲେ ସଂଯମର ମୂର୍ତ୍ତିମନ୍ତ ପ୍ରକାଶ । ତେଣୁ ସମସ୍ତ ପ୍ରଲୋଭନକୁ ଅକ୍ଲେଶରେ ଜୟ କରି ପାରିଛନ୍ତି । ଦେଶ, ରାଜ୍ୟବାସୀ, ଜାୟା, ଜନନୀ ସମସ୍ତଙ୍କୁ ପରିତ୍ୟାଗ କରିଛନ୍ତି । ବେଦମା, ଗୋଦମା ଓ ଦେଶବାସୀଙ୍କ ଶତ ଅନୁରୋଧ ବ୍ୟର୍ଥ ହୋଇଛି । ନିଜ ପ୍ରତିଜ୍ଞାରେ ସେ ଅଟଳ ରହିଛନ୍ତି ।

ହାଡ଼ିପାଙ୍କ କଠୋର ନିର୍ଦ୍ଦେଶ ତାଙ୍କୁ ମାନିବାକୁ ହୋଇଛି । ସେ କୃଚ୍ଛ୍ର ସାଧନା କରିଛନ୍ତି । ଯୋଗ ମାଧ୍ୟମରେ ସମସ୍ତ ଇନ୍ଦ୍ରିୟକୁ ଦମନ କରିଛନ୍ତି । ପ୍ରତ୍ୟହ ଅନ୍ନର ପରିମାଣ କ୍ରମଶଃ ହ୍ରାସକରି ଅନ୍ନ ଭୋଜନ ସଂପୂର୍ଣ୍ଣ ପରିତ୍ୟାଗ କରିଛନ୍ତି । ଜଳଜାତୀୟ ପାନୀୟ ମଧ୍ୟ ତ୍ୟାଗକରି ପରିଶେଷରେ ପବନ ଆହାର କରିଛନ୍ତି । ସଂସାରର ଲୋଭ ମୋହ ଦୂରକରି ଗୃହତ୍ୟାଗୀ ହୋଇଥିଲେ । ପୁଣି ସମସ୍ତ ପ୍ରକାର କାମନା ବାସନା ମଧ୍ୟ ପରିହାର କଲେ । ଏଥିପାଇଁ ତାଙ୍କୁ ଘୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଲା ।

ଯୁବକ ଗୋବିନ୍ଦଚନ୍ଦ୍ରଙ୍କୁ ରହିବାକୁ ହେଲା ରମ୍ଭା ଗଣିକା ଘରେ । ରମ୍ଭା ନବଯୁବତୀ, ଅନିନ୍ଦ୍ୟ ସୁନ୍ଦରୀ, ପୁଣି ଗଣିକା । ଗୋବିନ୍ଦଚନ୍ଦ୍ରଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତା'ର ମନ ଆକୃଷ୍ଟ ହୋଇଛି ଓ ତାଙ୍କୁ ନିଜର ଆୟତ୍ତକୁ ଆଣିବାପାଇଁ ଇଚ୍ଛା କରିଛି । ଦୈବଯୋଗ ଏପରି ଯେ ଜଣେ ସୁପୁରୁଷ ସହିତ ସାକ୍ଷାତ ହୋଇଛି ଭାବି ନିଜକୁ କୃତାର୍ଥ ମଣିଛି । ପ୍ରଥମେ ବିଭିନ୍ନପ୍ରକାର ମିଷ୍ଟକଥା କହିଲା ଓ ନିଜର ମନକଥା ଗୁଡ଼ିକ ପ୍ରକାଶ କଲା । ଦୁଇଓଳି ଦୁଧଭାତ, ପିଠା, କ୍ଷୀରସା ଓ ସୁପକ୍ୱ ଫଳ ଇତ୍ୟାଦି ସୁଖାଦ୍ୟର ପ୍ରଲୋଭନ ଦେଖାଇଲା । ପୁଣି ଗୋବିନ୍ଦଚନ୍ଦ୍ର ଶୟନ କରିବେ ସୁଶଯ୍ୟା ବିଶିଷ୍ଟ ପଲଙ୍କରେ । ନିଜ ଇଚ୍ଛା ଅନୁସାରେ ରମ୍ଭା ଘରେଥିବା ଅପୂର୍ବ ପଦାର୍ଥମାନ ସେ ବ୍ୟବହାର କରି-ପାରିବେ । ଏସବୁ ପ୍ରତ୍ୟାଖ୍ୟାନ କରି ଗୋବିନ୍ଦଚନ୍ଦ୍ର ଉତ୍ତର ଦେଲେ ଏଥିରେ ମୋର ପ୍ରୟୋଜନ ନାହିଁ । ପାଞ୍ଚ ଘରର ଭିକ୍ଷା ଗୃହୀଲର ଅନ୍ନରେ ସେ ଜୀବନ ରକ୍ଷା କରିବାକୁ ଚାହାନ୍ତି । ସୁପାରି ଶଯ୍ୟା ପରିବର୍ତ୍ତେ ବାହାର ମେଲ ହିଁ ତାଙ୍କର ଲୋଡ଼ା । ସେଠି ସେ ଧୂନି ଲଗାଇ ବର୍ଷା କାକରକୁ ଦେହରେ ମେଣ୍ଟାଇ ନେବେ । ତଥାପି ରମ୍ଭା ତା'ର ଚେଷ୍ଟାରୁ ବିରତ ହୋଇନାହିଁ । ତା' ମନର କଥା ପ୍ରତ୍ୟକ୍ଷରେ ପ୍ରକାଶ କରିଛି । ରକ୍ତ ମାଂସର ଦେହଧରି ଏତେ ଆଣ୍ଟ କରିବା ଉଚିତ କି ? ତା' ଦୃଷ୍ଟିକୋଣରୁ ସେ ଜୀବନର ଦର୍ଶନ ବାଛିଛି । ଗୋବିନ୍ଦର ମୁଖକୁ ଚାହିଁ ବଶୀଭୂତ ହୋଇ କହିଛି "ସ୍ନେହ ଦେହ ଯେଉଁଣି ଭୋଗ ସେହି ନ କରଇ/ମଲେ କି ଖାଇବ ବୋଲି ସତେ ନ ଜାଣଇ ।" ଜୀବନର ସୁଖଦୁଃଖ ଏଇ ଜନ୍ମରେ । ମୃତ୍ୟୁପରେ ଏ ଦେହ କ'ଣ ଅବା ପାଏ ? କିନ୍ତୁ ଗୋବିନ୍ଦଚନ୍ଦ୍ର ରମ୍ଭାକୁ ମାତା ବୋଲି ସମ୍ବୋଧନ କରିଛନ୍ତି ଓ କହିଛନ୍ତି—ଇଚ୍ଛାହେଲେ ମତେ ବିଦାୟ ଦେଇପାରୁ । ମାତ୍ର ଏ ପ୍ରକାର କଥା କଦାଚ ଉଚ୍ଚାରଣ କରିବୁ ନାହିଁ । ରମ୍ଭା ପୁନଶ୍ଚ କହିଛି—ମାଣିକ ଯାଚିଲେ ଲୋକେ ଭେଣ୍ଟି କହି ପ୍ରତ୍ୟାଖ୍ୟାନ କରନ୍ତି । "ଯାଚିବାର

ଦ୍ରବ୍ୟ କେହ୍ନ ଆନକରେ ଅବା" ଏହ୍ୱା କହ୍ନ ଗଣିକା ନଜର ମନୋଭାବକୁ ପ୍ରତ୍ୟକ୍ଷରେ କାର୍ଯ୍ୟରେ ପରଣତ କରବା ପାଇଁ ଆଗେଇ ଆସିଲ । * ସମ୍ମୁଖରେ ସଙ୍କଟର ବାଘୁଣୀ ଉପସ୍ଥିତ । ଉଦ୍ଧାର ପାଇବାର ଉପାୟ କ'ଣ ? ତତ୍କ୍ଷଣାତ୍ ଗୋବନ୍ଦଚନ୍ଦ୍ର ଗୁରୁଙ୍କୁ ସ୍ମରଣ କଲେ ଓ ରମ୍ଭାକୁ ଠେଲିଦେଇ ତା'ର ଦୁଇଭୁଜ ମଧ୍ୟରୁ ନଜକୁ ମୁକ୍ତ କଲେ । ଗଣିକା ଲଜ୍ଜ୍ୟାପାଇ ନଗ୍ରଣ ହୋଇ ରହ୍ନଲ । ଏହ୍ନ ଦୃଷ୍ଟାନ୍ତରୁ ଗୋବନ୍ଦଚନ୍ଦ୍ରଙ୍କର ସଂଯମ ଶକ୍ତିର ଚରମ ନଦର୍ଶନ ମିଳେ । କବ ତାଙ୍କୁ ଜଣେ ପରମ ସାଧକ ଭାବରେ ହିଁ ଚନ୍ଧଣ କରଛନ୍ତ । ସାଧାରଣ ମାନବର କୌଣସି ଦୁର୍ବଳତା ତାଙ୍କୁ ସ୍ପର୍ଶ କରନାହିଁ । ମନରେ ଗ୍ଳାନଲ୍ୟ ନାହିଁ, ଦ୍ୱନ୍ଦ୍ୱ ନାହିଁ, ହାର ଯିବାର ଭୟ ନାହିଁ । ସନ୍ନ୍ୟାସ ବ୍ରତ ଗ୍ରହଣକର ଗୃହ ତ୍ୟାଗ କଲଦନରୁ ସତେ ଯେପର ସେ ସିଦ୍ଧ ହୋଇ ସାରଛନ୍ତ ।

ଗୁରୁ ହାଡ଼ିପା, ଗୋବନ୍ଦଚନ୍ଦ୍ରଙ୍କୁ ରମ୍ଭାଘରୁ ଆଣି ମାଳାବେଣୀ ଧନାଶୁଣ୍ଢୀ ଘରେ ପହଞ୍ଚିଲେ । ସେଠାରେ ମଧ୍ୟ ଗୁରୁ ଗୋବନ୍ଦଚନ୍ଦ୍ରଙ୍କୁ କହ୍ନଦନ ରଖି ଅନ୍ୟତ୍ର ଗ୍ଲଲଗଲେ । ଗୋବନ୍ଦଚନ୍ଦ୍ରଙ୍କପାଇଁ ଅତ ଦାରୁଣ ପରସ୍ଥିତ ଆସି ପହଞ୍ଚିଲ । ତାଙ୍କ ଘରେ ପ୍ରତ୍ୟେକ ଦନ ମଦ ପ୍ରସ୍ତୁତ ହୁଏ ଏବଂ ତାହାକୁ ବକ୍ରୟ କରବାର ଦାୟିତ୍ୱ ଗୋବନ୍ଦଚନ୍ଦ୍ରଙ୍କ ଉପରେ ନ୍ୟସ୍ତଥାଏ । ପ୍ରଥମେ ଧନାଶୁଣ୍ଢୀ ମଦର ଉପକାରତା ସମ୍ପର୍କରେ ବୁଝାଇ କହ୍ନ ତାହା ପାନ କରବାପାଇଁ ପ୍ରବର୍ତ୍ତାଇଲ । ଗୋବନ୍ଦଚନ୍ଦ୍ର ତାହାକୁ ପ୍ରତ୍ୟାଖ୍ୟାନକଲେ । ଏହାପରେ ଧନାର ଷୋଳବର୍ଷର ଯୁବତୀ ସ୍ତ୍ରୀ, ଗୋବନ୍ଦଚନ୍ଦ୍ରଙ୍କ ପ୍ରତ ଆକୃଷ୍ଟହେଲ, ତା'ର ମନ ଉଚ୍ଛନ୍ନହେଲ, କୌଣସି କାର୍ଯ୍ୟରେ ମନ ଲଗିଲ ନାହିଁ । ଏପରକ ନଦ୍ରା ଓ ଭୋଜନ ପ୍ରତ ମଧ୍ୟ ଆଗ୍ରହ ରହ୍ନଲ ନାହିଁ । କେବଳ ବଭନ୍ନ ପ୍ରକାର ବେଶ ହେବାକୁ ମନହେଲ । ଶେଷରେ ଗୋବନ୍ଦଚନ୍ଦ୍ରଙ୍କୁ ପ୍ରକାଶ୍ୟରେ ରତ ଭିକ୍ଷାକଲ । କବ ଗୋବନ୍ଦଚନ୍ଦ୍ରଙ୍କଠାରେ ସାମାନ୍ୟ ମାନବୀୟ ଗୁଣ ଆରୋପ କରଛନ୍ତ । ରମ୍ଭା ଗଣିକା ପାଖରେ ଗୋବନ୍ଦଚନ୍ଦ୍ର ଯେପର ନର୍ଲିପ୍ତ ଥିଲେ ଏଠାରେ ସେପର ରହ୍ନପାର ନାହାନ୍ତ । ତାଙ୍କର ଶୁଣ୍ଢିଆଣୀ ପ୍ରତ ଦୁର୍ବଳତା ଆସିନାହିଁ ସତ, ମାତ୍ର ପ୍ରତକ୍ରିୟା ଦେଖାଦେଇଛ୍ନ । ସାଧାରଣ ମନୁଷ୍ୟ ପର ରାଜା କ୍ରୋଧ ପରବଶ ହୋଇ ଗାଳି ବର୍ଷଣ କରଛନ୍ତ । ପୁଣି ଅଭିଶାପ ଦେବାର ଧମକ

---

* ମରମ ବଚନ ସେ ଯେ କହ୍ନଲ ରାଜାରେ,
କହ୍ନ କହ୍ନ ଉଲଗ୍ନ ହୋଇଲ ଧାଡକାରେ ।
ପ୍ରେମ କୁତୂହଳେ ବାଳୀ ଉଲସି ଉଠିଲ,
ଗୋବନ୍ଦ ସୁମର ରାଜା ନୟନ ବୁଜିଲ ।

ଗୋବନ୍ଦ ଚନ୍ଦ୍ର—ପଦ ୭୩୨—୩୩

ମଧ୍ୟ ଦେଇଛନ୍ତି । * ପରମୁହୂର୍ତ୍ତରେ ସେ ନୈତିକତା ଦୃଷ୍ଟିରୁ ପୁଣି ଚିନ୍ତା କରିଛନ୍ତି, ଯେହେତୁ ଶୁଣ୍ଢୀର ଅନ୍ନ ଗ୍ରହଣ କରୁଛନ୍ତି, ତେଣୁ ତାଙ୍କୁ ଅଭିଶାପ ଦେବା ଉଚିତ୍ ନୁହେଁ । କିନ୍ତୁ ପରିଶେଷରେ ଶୁଣ୍ଢିଆଣୀ ଅତି ନିର୍ଲ୍ଲଜ ଭାବରେ ରାଜା ଗୋବିନ୍ଦଚନ୍ଦ୍ରଙ୍କୁ ବିବସନ କରି ଅତ୍ୟାଚାର କରିବାର ପ୍ରୟାସକଲା । ଏଠାରେ କବି ଯେପରି ଅଲୌକିକ ଘଟଣା ସୃଷ୍ଟି କରିଛନ୍ତି ତହିଁରୁ ସାଧକ ଗୋବିନ୍ଦଚନ୍ଦ୍ର ଚରିତ୍ରର ଅତିରଞ୍ଜନ ହେବାପରି ମନେହୁଏ । କାରଣ ଶୁଣ୍ଢିଆଣୀର ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହୋଇ ଗୋବିନ୍ଦଚନ୍ଦ୍ର ଗୁରୁଙ୍କୁ ସ୍ମରଣ କରିଛନ୍ତି ଓ ତାଙ୍କ ଆଶୀର୍ବାଦରୁ ଏକ କ୍ଳୀବ ପୁରୁଷରେ ପରିଣତ ହୋଇଛନ୍ତି । ତେଣୁ ଶୁଣ୍ଢିଆଣୀ ଯେତେବେଳେ ରାଜାଙ୍କୁ ବିବସନ କରିଛି ସେତେବେଳେ ରାଜାଙ୍କର କ୍ଳୀବତ୍ୱ ଲକ୍ଷ୍ୟକରି ନିରୁଦ୍‌ବେଗମନା ହୋଇଛି ଓ ସେ କାର୍ଯ୍ୟରୁ ନିବୃତ୍ତ ହୋଇଛି । ସାଧକମାନେ ଗୁରୁକୃପାରୁ ଅନେକ ଅଲୌକିକ କାର୍ଯ୍ୟ ହାସଲ କରିପାରନ୍ତି । ଜଗନ୍ନାଥ ଦାସ ନାରୀ ରୂପ ଗ୍ରହଣ କରିଥିବା ପ୍ରବାଦ ମଧ୍ୟ ଶୁଣିବାକୁ ମିଳେ । ଏଠି ପ୍ରଶ୍ନ ଉଠେ, ଗୋବିନ୍ଦଚନ୍ଦ୍ର ସେତେବେଳକୁ ସାଧନା ମାର୍ଗର ଆଦ୍ୟ ପାଦରେ ମାତ୍ର; ସିଦ୍ଧି ପାଇବାପାଇଁ ଆହୁରି ଅନେକ ସାଧନା ବାକି ଥାଏ । ତଥାପି ସ୍ମରଣ ମାତ୍ରକେ ନିଜର ଶାରୀରିକ ପରିବର୍ତ୍ତନ କରିପାରିଲେ କିପରି ?

ପରିଶେଷରେ କୈବର୍ତ୍ତୀ ସହ କଳିଦ୍ୱନ୍ଦ ଲଢ଼ିବାକୁ ହୋଇଛି । ଗୋବିନ୍ଦଚନ୍ଦ୍ରଙ୍କର ନିଜ ସପକ୍ଷରେ ଯେଉଁ ସାମାନ୍ୟତମ ମୋହ ଥିଲା ତାହା ମଧ୍ୟ ଦୂର ହେଲା, କୈବର୍ତ୍ତୀ ସହ କଥୋପକଥନ ମାଧ୍ୟମରେ । ଗୋବିନ୍ଦଚନ୍ଦ୍ର ସିଦ୍ଧସାଧକ ହେଲେ । ଆକାଶରେ ଉଡ଼ିଲେ, ଭେଳା ନଥାଇ ସପ୍ତସିନ୍ଧୁ ପାରହେଲେ । ଏପରି ଆହୁରି ଅନେକ ଅଲୌକିକ କାର୍ଯ୍ୟ ହାସଲ କରିପାରିଲେ । କାରଣ ସେ ଜଣେ ନିଷ୍ଠାପର ସାଧକ । ଗୋବିନ୍ଦଚନ୍ଦ୍ର ଜଣେ ଦୟାବନ୍ତ ପୁରୁଷ । ଯୋଗୀ ହେବା ପୂର୍ବରୁ ବହୁ ଦାନ-ଧର୍ମ କରୁଥିଲେ । ଗୃହତ୍ୟାଗ ପୂର୍ବରୁ ତେଣୁ ରାଜ୍ୟବାସୀଙ୍କର ସମସ୍ତ ଦେୟ ପରିଶୋଧ କରିଛନ୍ତି । କେବଳ ରେଦମା, ଗୋଦମାଙ୍କ ପ୍ରତି ଗୋବିନ୍ଦଚନ୍ଦ୍ର ଯଥୋଚିତ ଉଦାର ଓ ଦୟାବନ୍ତ ହୋଇଥିବା ମନେ-ହୁଏନାହିଁ । ପରବର୍ତ୍ତୀ ସମୟର ସାମକ ଭୀମଭୋଇ କହିଥିଲେ, "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।" କିନ୍ତୁ ଗୋବିନ୍ଦଚନ୍ଦ୍ର ବୋଧହୁଏ ମନେକରୁଥିଲେ

---

* ଆଜ ଆମ୍ଭେ କେଳି ରସ କରିବା ଗୋସାଇଁ,
ଅଥୟ କରୁଛୁ ଦେହ ତୁମ୍ଭ ସୁଖ ଚାହିଁ ।

× × ×

ଶାପ ଦେଲେ ମରିବୁ ଆସନ୍ତୁ ଘୁଞ୍ଚିଯାଅ,
ନାସିକା କର୍ଣ୍ଣ ଛେଦିବି ବେଗେହେଁ ପଳାଅ ।

ପରିବାର, ରାଜ୍ୟ ଓ ରାଜ୍ୟବାସୀଙ୍କର ଦୁର୍ଗତି ହେଉପଛକେ ସେ ନିଜେ ଜୀବନ୍ମୁକ୍ତ ତଥା ମୃତ୍ୟୁଞ୍ଜୟ ହୁଅନ୍ତି । ଏହା କେଉଁ ମହତ୍ତ୍ୱ କାର୍ଯ୍ୟ ଥିବା ! କବି ଗୋବିନ୍ଦଚନ୍ଦ୍ରଙ୍କ ଚରିତ୍ର ଯେପରି ଚିତ୍ରଣ କରିଛନ୍ତି ତହିଁରୁ ତାଙ୍କର ସାଧକ ବ୍ୟକ୍ତିତ୍ୱର ମହତ୍ତ୍ୱ ବହୁଗୁଣିତ ହୋଇଥିବା ଲକ୍ଷ୍ୟ କରାଯାଏ । ମାତ୍ର ଏହାର ବାସ୍ତବବାଦୀ ଦିଗଟି ପ୍ରତି ଦୃଷ୍ଟି ଆକର୍ଷଣ କଲେ ପ୍ରଶ୍ନ ଉଠେ ଯେଉଁ ଗୋବିନ୍ଦଚନ୍ଦ୍ର ତରୁଣ ବୟସରେ ଗଣିକା କବଳରୁ ନିଜକୁ ମୁକ୍ତ କରିପାରେ, ସେଇ ଗୋବିନ୍ଦଚନ୍ଦ୍ର ରେବମା, ଗୋଦମାଙ୍କୁ ସଙ୍ଗରେ ନେବାପାଇଁ ଦ୍ୱିଧା ଅନୁଭବ କଲେ କାହିଁକି, ଆଉ ଶଯ୍ୟା ରଚନା କରିବାର ପ୍ରତିଶ୍ରୁତି ପାଇ ମଧ୍ୟ ? ପୁରାଣ ସାହିତ୍ୟରେ ଏପରି ଦୃଷ୍ଟାନ୍ତ ବିରଳ ନୁହେଁ । ବନବାସ ସମୟରେ ରାମଙ୍କ ସହିତ ସୀତା ଓ ଅଜ୍ଞାତବାସ-ବେଳେ ପଞ୍ଚପାଣ୍ଡବଙ୍କ ସହିତ ଦ୍ରୌପଦୀ ମଧ୍ୟ ଥିଲେ । ସେମାନେ କୌଣସି ଦୃଷ୍ଟିରୁ ତାଙ୍କର ପତିମାନଙ୍କର ପାଦର ବେଢ଼ି ହୋଇନାହାନ୍ତି । ନିଜେ କବି ମଧ୍ୟ ଯୋଗୀ ଶିବଙ୍କ ପାଖରେ ପାର୍ବତୀ ଅବସ୍ଥାନ କରିବାର ଦୃଷ୍ଟାନ୍ତ ଦେଇଛନ୍ତି । ରେବମା, ଗୋଦମାଙ୍କୁ ସାଙ୍ଗରେ ନେଇ ଯଦି ଗୋବିନ୍ଦଚନ୍ଦ୍ର ସିଦ୍ଧିଲାଭ କରି ପାରିଥାନ୍ତେ ତେବେ ତାଙ୍କ ଚରିତ୍ରର ମହତ୍ତ୍ୱ ବରଂ ଅଧିକ ପ୍ରକଟିତ ହୋଇଥାନ୍ତା ।

ଗୋବିନ୍ଦଚନ୍ଦ୍ର କାବ୍ୟର ଅନ୍ୟ ଗୋଟିଏ ପ୍ରଧାନ ଚରିତ୍ର ହେଉଛନ୍ତି ମୁକ୍ତା ଦେଈ, ଯିଏ ହେଉଛନ୍ତି ଜଣେ ସାଧିକା, ଜନନୀ ଓ ରାଜ୍ୟଶାସିକା । କିନ୍ତୁ କବି ବିଶେଷଭାବରେ ତାଙ୍କର ସାଧିକା ବ୍ୟକ୍ତିତ୍ୱର ଚିତ୍ର ହିଁ ଅଙ୍କନ କରିଛନ୍ତି । ଅବଧୂତ ଗୋରଖନାଥଙ୍କର ସେ ଶିଷ୍ୟା ଓ ସିଦ୍ଧ ସାଧିକା । ତେଣୁକରି ସେ ସନ୍ନ୍ୟାସବ୍ରତର ମହନୀୟତା ଉପଲବ୍ଧି କରିଛନ୍ତି ଓ ପୁତ୍ରକୁ ଯୋଗୀ ହେବାପାଇଁ ପ୍ରବର୍ତ୍ତାଇଛନ୍ତି । କିନ୍ତୁ ଯେଉଁ ପରିପ୍ରେକ୍ଷୀରେ ସେ ଗୋବିନ୍ଦଚନ୍ଦ୍ରଙ୍କୁ ଯୋଗୀ ହୋଇ ଗୃହତ୍ୟାଗ କରିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି ତାହାର ସ୍ୱାଭାବିକତା ବିଚାରସାପେକ୍ଷ । ନିଜର ରୂପ ଯୌବନରେ ବିମୁଗ୍ଧ ରାଜକୁମାର ଦର୍ପଣରେ ନିଜର ମୁଖବିମ୍ବ ଦର୍ଶନ କରୁଥିବା ଲକ୍ଷ୍ୟକରି ରାଣୀ ପୁତ୍ରକୁ ସନ୍ନ୍ୟାସବ୍ରତ ଗ୍ରହଣପାଇଁ ପରାମର୍ଶ ଦେଇଛନ୍ତି । ଏପରିକି ପ୍ରଥମେ ଗୋବିନ୍ଦଚନ୍ଦ୍ର ଅନିଚ୍ଛାପ୍ରକାଶ କରିଥିଲେ ମଧ୍ୟ ବହୁ ପ୍ରକାରେ ବୁଝାଇ ନିଜ ଇଚ୍ଛାକୁ ପୁତ୍ରଠାରେ ଆରୋପ କରିଛନ୍ତି । ଗୋବିନ୍ଦଚନ୍ଦ୍ର ଦାନଧର୍ମ କରନ୍ତି, ଦେବତା ବ୍ରାହ୍ମଣଙ୍କୁ ସେବା କରନ୍ତି, ଈଶ୍ୱରଙ୍କ ମସ୍ତକରେ ଲକ୍ଷେ ଚମ୍ପା ଚଢ଼ାନ୍ତି । ଦୈନିକ ସୂର୍ଯ୍ୟଙ୍କୁ ଧ୍ୟାନ କରନ୍ତି, କିଛି ସମୟପାଇଁ ବିଷ୍ଣୁପୁରାଣ ଶୁଣନ୍ତି । ପୁଣି ଗର୍ଭଧାରିଣୀ ମାତାଙ୍କର ପଦବନ୍ଦନା କରନ୍ତି ଓ ପିତୃପିତାଙ୍କର ଆତ୍ମା ମୋକ୍ଷ ନିମନ୍ତେ ପିଣ୍ଡଦାନ କରନ୍ତି । ଏତେ ଧର୍ମ କାର୍ଯ୍ୟ କରୁଥିବା ସତ୍ତ୍ୱେ ଯୋଗୀ ହେବାର ପ୍ରୟୋଜନୀୟତା କ'ଣ ଅଛି ବୋଲି ଗୋବିନ୍ଦଚନ୍ଦ୍ର ମାତାଙ୍କୁ ଜିଜ୍ଞାସା କରିଛନ୍ତି । ଏହାଶୁଣି ମୁକ୍ତା ଦେଈ କହିଛନ୍ତି—ଯେତେ ଧର୍ମ କଲେ ମଧ୍ୟ ନିରର୍ଥକ । କାରଣ ଏ ପ୍ରକାର ଧର୍ମାଚରଣ ଚିର ଆୟୁଷ ପ୍ରଦାନ କରିପାରେ ନାହିଁ । ଯୋଗସାଧନା ଦ୍ୱାରାହିଁ

କେବଳ ଚରିତ୍ରାର୍ଥ ହେବା ସମ୍ଭବ । * ପୁଣି ମୁକୁତା ଦେଈ ନିଜେ ଜଣେ ସାଧିକା ଥିବାରୁ ସାଧନାର ବିଭିନ୍ନ ପର୍ଯ୍ୟାୟର କଥା କହିଛନ୍ତି । ମାତା, ଗୋବିନ୍ଦଚନ୍ଦ୍ରଙ୍କୁ ସୂଚନା ଦେଇଛନ୍ତି ଯେ ଯୋଗୀ ହେଲେ କର୍ଣ୍ଣରେ ମୁଦ୍ରା, କାନ୍ଧରେ ଶିଙ୍ଗା, ତ୍ରିଶୂଳ, ଝୋଳିକନ୍ଥା, ଲଉଥାଳି ଘେନିବ । ପୁଣି ସର୍ବାଙ୍ଗରେ ବିଭୂତିରେ ଭୂଷିତ ହେବାକୁ ପଡ଼ିବ । ଯୋଗୀର ବେଶ ପୃଥକ ** ଯିଏ ଗୃହତ୍ୟାଗୀ ଓ ଯୋଗୀ, ତାଙ୍କୁ ଜିତେନ୍ଦ୍ରିୟ ହେବାକୁ ହୁଏ । ରାଗ, ଅଭିମାନ, ଦ୍ୱେଷ ତ୍ୟାଗ କରିବାକୁ ହେବ । ଯୋଗୀ ଭିକ୍ଷା ଅନ୍ନ ଉପରେ ଜୀବନଧାରଣ କରୁଥିଲେ ମଧ୍ୟ ଭିକ୍ଷା ନ ମିଳିଲେ ଦୁଃଖ କରିବନାହିଁ । ଭିକ୍ଷା ପାଇବା ବା ନ ପାଇବା ଉଭୟ ଅବସ୍ଥାରେ ମନରେ ସନ୍ତୋଷ ଥାଏ ।

ପୁତ୍ରକୁ ଉପଦେଶ ଦେବା ଛଳରେ ମୁକୁତା ଦେଈ କହିଛନ୍ତି – ଭିକ୍ଷା ଦେଇଥିବା ନାରୀର ମୁଖକୁ କେବେହେଁ ଚାହିଁବା ସମୀଚୀନ ନୁହେଁ ଏବଂ ପ୍ରତ୍ୟେକ ନାରୀକୁ ମା ବା ମାତୃସ୍ଥାନୀୟ ବୋଲି ମନେକରିବା ଉଚିତ୍ । ମନେହୁଏ ପ୍ରବୃତ୍ତିମାର୍ଗୀ ସହଜିୟା ଧର୍ମର ପ୍ରଭାବରୁ ସମାଜକୁ ମୁକ୍ତଦେବାର ପ୍ରଚେଷ୍ଟା ନାଥ ଧର୍ମରେ ଯେପରି କରାଯାଇଛି, ତା'ର ସୂଚନା କବି ଏଠାରେ ଦେଇଛନ୍ତି । କେବଳ ନାରୀ ନୁହେଁ", ପୁରୁଷମାନଙ୍କୁ ମଧ୍ୟ ବାପା, ଭାଇ ଭାବରେ ଗ୍ରହଣ କରିବାକୁ ହେବ । ଭିକ୍ଷା ନେଇ ଆସିବାବେଳେ ପଛକୁ ଚାହିଁବ ନାହିଁ କେବଳ ଭୂମିକୁ ଚାହିଁ ଫେରି ଆସିବ । କେବଳ ଯୋଗୀର ଭେକ ନେଇଗଲେ କେହି ଯୋଗୀ ହୁଏ ନାହିଁ । ତେଣୁ ଯୋଗୀର ବାହ୍ୟ ଭେକ ବ୍ୟତୀତ ଅନ୍ତରର ଶୁଦ୍ଧତା ପ୍ରତି ଦୃଷ୍ଟି ଦେବା ଉଚିତ୍ । ପ୍ରଥମରୁ ହିଂସା, ଅହଂକାର ପ୍ରଭୃତି କୁଗୁଣ ଓ କାମ, କ୍ରୋଧ, ଲୋଭ, ଇତ୍ୟାଦି ପ୍ରବୃତ୍ତିଗୁଡ଼ିକୁ ଦମନ କରିବାକୁ ହେବ । ମୁକୁତା ଦେଈ କହିଛନ୍ତି, ଭିକ୍ଷା କରିବାବେଳେ ପାଞ୍ଚ ଘରୁ ଭିକ୍ଷା ଗ୍ରହଣ କରାଯାଇପାରେ । ଅଧିକ ଭିକ୍ଷା ନେଲେ

---

* ମାତାସ୍ତେ ବୋଇଲେ ବାବୁ ଶୁଣରେ କୁମର
ଯେତେ ଧର୍ମ କରୁଅଛୁ ସମସ୍ତ ନିଷ୍ଫଳ ।
ପିଣ୍ଡ ମୋକ୍ଷ କରଣ ଯେତେଧର୍ମ କର
ଚିର ଆୟୁଷ ତୋହର ହୋଇବ କୁମର ।

(ଗୋବିନ୍ଦଚନ୍ଦ୍ର)

** କର୍ଣ୍ଣରେ ମୁଦ୍ରା ଲଗ କାଉ କନ୍ୟା ହୃଦେ
ସର୍ବାଙ୍ଗ ବିଭୂତି ଘଷି ରହିବ ଆନନ୍ଦେ ।
ଶିଙ୍ଗା, ଶକତ ତ୍ରିଶୂଳ କନ୍ଧେ ଘେନିଥିବୁ
ଝୋଳିକନ୍ଥା ଲଉଥାଳି କରତେ ବହିବୁ ।

( ଗୋବିନ୍ଦଚନ୍ଦ୍ର )

ପୁଣ୍ୟହାନି ଘଟେ । ବୋଧହୁଏ ଏହାଦ୍ୱାରା ଲୋଭ ବୃଦ୍ଧି ପାଇବାର ଆଶଙ୍କା ଥିବାରୁ ମାତା ତାହା କରିବାକୁ ବାରଣ କରିଛନ୍ତି । ଯୋଗ ସାଧନର ପ୍ରଧାନ ଅନ୍ତରାୟ ହେଉଛି, ଆହାର, ମୈଥୁନ, ନିଦ୍ରା, । ତେଣୁ ଏଗୁଡ଼ିକ ସର୍ବାଦୌ ବର୍ଜନୀୟ । * ମାତାଙ୍କ ଉପଦେଶକୁ ଗ୍ରହଣ କରିନେଇ ଗୋବିନ୍ଦଚନ୍ଦ୍ର ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିଛନ୍ତି । ଗୋବିନ୍ଦ-ଚନ୍ଦ୍ର ପୁସ୍ତକରେ ଏପରି ବର୍ଣ୍ଣନା ଛନ୍ଦେ ଛନ୍ଦେ ସ୍ଥାନ ପାଇଛି । କାସ୍ପାସିକ ହେଲା ମନେ-କରି ହାଡ଼ିପା ଯେତେବେଳେ ଗୋବିନ୍ଦଚନ୍ଦ୍ରଙ୍କୁ ତାଙ୍କ ମାତାଙ୍କ ପାଖରେ ପହଞ୍ଚାଇଛନ୍ତି, ମୁକୁତା ଦେଇ ପୁତ୍ରକୁ ଅନ୍ନ ଭିକ୍ଷା ଦେଇଛନ୍ତି । ମାତ୍ର ଗୋବିନ୍ଦଚନ୍ଦ୍ର ଅନ୍ନ ସହିତ ଲବଣ ଖାଇବାପାଇଁ ଇଚ୍ଛା କରିଛନ୍ତି । ଏଥିରେ ମାତା କ୍ଷୁବ୍ଧ ହୋଇଛନ୍ତି ଏବଂ ହାଡ଼ିପାଙ୍କୁ ମଧ୍ୟ ଏ ବିଷୟ ଜଣାଇଛନ୍ତି । ଆକ୍ଷେପ କରି ସେ କହିଛନ୍ତି, ବାରବର୍ଷ ହେବ ଗୋବିନ୍ଦ ଗୃହତ୍ୟାଗ କଲାଣି । ପୁତ୍ରକୁ ସାଙ୍ଗରେ ନେଇ ଏତେଦିନ ଦେଶାନ୍ତର ହେଲ । କିନ୍ତୁ କି ଶିକ୍ଷା ସେ ପାଇଲା ? କ'ଣ ବା ସାଧନାକଲା । ଅନ୍ନ ପରଷିବା ପରେ ସେ ଲବଣ ମାଗିଲା । ଲବଣ ବ୍ୟତୀତ ଶୁଦ୍ଧା ଅନ୍ନ ଭୋଜନ କରିବାର ସଂଯମ ଶିକ୍ଷା ଏ ପର୍ଯ୍ୟନ୍ତ କରିପାରିନାହିଁ । ଲବଣ ଶରୀରପାଇଁ କ୍ଷତିକାରକ । ଲବଣ, ଶରୀରର ମାଂସକୁ କ୍ଷୟକରେ । ଏ ପୁତ୍ରକୁ ଏହିକ୍ଷଣି ଯେନିଯାଅ । କେବଳ ଲୁଣ ନୁହେଁ, ଅନ୍ନ ମଧ୍ୟ ଗ୍ରହଣୀୟ । ନିଜେ ସାଧିକା ହୋଇ ଥିବାରୁ ଏପରି କୃଚ୍ଛ୍ର ସାଧନାପାଇଁ ପୁତ୍ରକୁ ନିର୍ଦ୍ଦେଶ ଦେଉଛନ୍ତି । ଅବଶ୍ୟ ଲୁଣ ସ୍ୱାସ୍ଥ୍ୟ ପ୍ରତି କ୍ଷତିକାରକ । ଏ ପୁସ୍ତକରେ କବି ଏପରି କେତେକ ବିଷୟ ବର୍ଣ୍ଣନା କରିଛନ୍ତି ଯାହାର ବୈଜ୍ଞାନିକ ସତ୍ୟତାକୁ ଅସ୍ୱୀକାର କରାଯାଇ ନ ପାରେ ।

---

* କାମ, କ୍ରୋଧ, ନିଦ୍ରା ତ୍ୟାଗ ନ କରିବୁ ଯେବେ,
ପିଙ୍ଗଳର ବସ୍ତ୍ର ଧୋଇ ଯେନି ଯିବ ତେବେ ।
ରତି ଉପେକ୍ଷିଣ ତୁ ଆହାର ବଞ୍ଚାଅ,
ନିଶାରେ ଜଗି ବସିବୁ ମନେ ହେଉଥାଅ ।

(ଗୋବିନ୍ଦଚନ୍ଦ୍ର)

କିନ୍ତୁ ଦର୍ପଣରେ ମୁହଁ ଦେଖିବା ପରି ଅତି ସାଧାରଣ ଘଟଣାରେ ମୁକ୍ତାଦେଇ ପୁତ୍ରକୁ ସନ୍ନ୍ୟାସୀନପାଇଁ ସଂସାରତ୍ୟାଗ କରିବାର ସିଦ୍ଧାନ୍ତ ଗ୍ରହଣକଲେ କିପରି ? ଏହାଙ୍କ ପରବର୍ତ୍ତୀ ସମୟରେ ଯୋଗୀନ୍ଦ୍ର ଦେବଙ୍କ ବିପ୍ରଙ୍କଦ୍ୱାରା ରଚିତ ଟୀକା ଗୋବିନ୍ଦଚନ୍ଦ୍ରରେ ରାଜାଙ୍କର ଯୋଗୀ ହେବାର କାରଣ ଯେପରି ବର୍ଣ୍ଣିତ ତାହା ଅଧିକ ଯଥାର୍ଥ ମନେହୁଏ । ବହୁ କଷ୍ଟରେ ଲାଭ କରିଥିବା ଏକମାତ୍ର ପୁତ୍ରର ଏକୋଇଶି ବର୍ଷ ସମୟରେ ମୃତ୍ୟୁ ଦଣ୍ଡ ଥିବା ଜାଣି ରାଣୀ ପୁତ୍ରକୁ ଏକପ୍ରକାର ବାଧ୍ୟ କରିଛନ୍ତି ଗୃହତ୍ୟାଗୀ ହୋଇ ଯୋଗ-ସାଧନା କରିବାପାଇଁ । ସେଠି ଆଧ୍ୟାତ୍ମିକ ଚିନ୍ତା-ଚେତନା ଓ ତତ୍ତ୍ୱର ପ୍ରତିଷ୍ଠା ଅପେକ୍ଷା ମାତୃହୃଦୟର ବ୍ୟାକୁଳତା ଅଧିକ ପ୍ରକଟିତ । ସମ୍ଭବତଃ ଯୋଗ ସାଧନାର ମହତ୍ତ୍ୱ ପ୍ରତିଷ୍ଠା

କରିବାପାଇଁ ଇଚ୍ଛାକୃତ ଭାବରେ ଏଠାରେ କବି ଯଶୋବନ୍ତ ଏପରି ଘଟଣାଟିଏ ଆରୋପ କରିଛନ୍ତି । ତଥାପି କବି ଏହାକୁ ନିଛକ ଏକ ସନ୍ଥ ସାହିତ୍ୟ ଭାବରେ ନ ଗଢ଼ି ଯୋଗ ଓ ଜୀବନ ମଧ୍ୟରେ ଏକ ସମତା ରକ୍ଷା କରିବାର ପ୍ରୟାସ କରିଛନ୍ତି । ସେଥିପାଇଁ ପୁତ୍ରତ୍ୟାଗ ପରେ ତାଙ୍କର ପ୍ରତିକ୍ରିୟା ଜାତ ହୋଇଛି । ପରବର୍ତ୍ତୀ ସମୟରେ ଦାର୍ଢ୍ୟତାଭକ୍ତିର କବି ଯେପରି ଅବାସ୍ତବ ବର୍ଣ୍ଣନାକୁ ପ୍ରଶ୍ରୟ ଦେଇଛନ୍ତି, ଯଶୋବନ୍ତ ତହିଁରୁ ନିବୃତ୍ତ ହୋଇଛନ୍ତି । ଦାର୍ଢ୍ୟତାଭକ୍ତିରେ ବର୍ଣ୍ଣନା ଅଛି ଆକସ୍ମିକ ଅତିଥି ଆସି ଘରେ ପହଞ୍ଚି ଯାଆନ୍ତି ଏବଂ ଏକମାତ୍ର ଶିଶୁ ପୁତ୍ରକୁ କାଟି ମାଂସ ରାନ୍ଧି ଖାଇବାକୁ ଦେବାକୁ ଅନୁରୋଧ କରନ୍ତି । ମା' ପୁଣି ଅକୁଣ୍ଠିତ ଚିତ୍ତରେ ଅବଲମ୍ବେ ତାହା ପାଳନକରେ । ଅବଶ୍ୟ କେମିତି କେଜାଣି ପରେ ପରେ ସେ ପୁଅ ବଞ୍ଚିଉଠେ । ଗୀତ ଗୋବିନ୍ଦଚନ୍ଦ୍ରରେ ଯଶୋବନ୍ତ ମାତୃହୃଦୟକୁ ଏତେଦୂର କଠୋର କରିପାରିନାହାନ୍ତି ସତ କିନ୍ତୁ ମୁକୁତା ଦେଈଙ୍କୁ ଜଣେ ସାଧିକା ଭାବରେ ହିଁ ପ୍ରକାଶ କରିଛନ୍ତି । ତେଣୁ ଜନନୀତ୍ୱର ଚିତ୍ରଣ ଗୌଣ ହୋଇଛି । ଗୋବିନ୍ଦଚନ୍ଦ୍ର ଯୋଗୀ ହେବାପରେ ଯେତେବେଳେ ବେଦମା ଗୋଦମା ବିକଳ ଭାବରେ କ୍ରନ୍ଦନ କରିଛନ୍ତି ସେତେବେଳେ ମୁକୁତା ଦେଈ ସେମାନଙ୍କ କର୍ଣ୍ଣରେ ମହାମନ୍ତ୍ର ପ୍ରଦାନ କରିଛନ୍ତି । ତାଙ୍କଠାରେ କି ଶକ୍ତି ଥିଲା କେଜାଣି ମନ୍ତ୍ର ଶୁଣି ସେମାନେ ଜ୍ଞାନଲାଭ କଲେ ଏବଂ ଯେଉଁମାନେ ସ୍ୱପ୍ନରେ ଶଙ୍ଖା ଖୋଲି ବିଳାପ କରୁଥିଲେ ସେମାନେ ମୁକୁତା ଦେଈଙ୍କୁ କହିଲେ, "ଦେଶାନ୍ତରେ ଯାଉ ରଜା ସାକ୍ଷ ହେଉ ଧର୍ମ / ଜଳ ସ୍ଥଳ ଅନଳେ ରଖନ୍ତୁ ମହାମାଈ / ଦିବାନିଶି ଜଗନ୍ନାଥେ ସାହାଥିବେ ହୋଇ ।"

ମୁକୁତା ଦେଈ ପୁତ୍ରକୁ ସାଧନା କରିଛନ୍ତି ଚିରଞ୍ଜୀବୀ କରିବାପାଇଁ । "ଚିର ଆୟୁଷ ତୋହର ହୋଇବ କୁମର ।" କହି ତାଙ୍କୁ ଯୋଗୀ କରିଛନ୍ତି । ପୁଣି ଅନ୍ନ ଭୋଜନ ନ କରି ପବନ ଅହାର କରିବାପାଇଁ ମଧ୍ୟ କହିଛନ୍ତି । ସାଧନାର ବାରବର୍ଷ ପରେ ଗୋବିନ୍ଦଚନ୍ଦ୍ର ମାତାଙ୍କୁ ଭେଟିଛନ୍ତି ଏବଂ ମୁକୁତାଦେଈ ତାଙ୍କୁ କହିଛନ୍ତି "ଅନ୍ନ ଭୋଗ କଲେ ଲୋକ ଯାଉଅଛି ନାଶ ।" ପୁନର୍ବାର ଗୋବିନ୍ଦଚନ୍ଦ୍ର ପୂର୍ଣ୍ଣସିଦ୍ଧ ହୋଇ ବଙ୍ଗ ଦେଶକୁ ଫେରିଛନ୍ତି । ସେତେବେଳେ ମଧ୍ୟ ପୁତ୍ରକୁ ଦେଖି ମାତା ଶୋକ ଗଦଗଦ ହୋଇ ଲୋତକ ବର୍ଷଣ କରିଛନ୍ତି । ଗୋବିନ୍ଦଚନ୍ଦ୍ର ସେତେବେଳକୁ କେବଳ ପବନ ଆହାର କରୁଥିଲେ । ତେଣୁ ମେରୁହାଡ଼ ଭିତରେ ନାଭି ପଶି ଯାଇଛି । କଣ୍ଠସ୍ୱର ଶଙ୍ଖ ଧ୍ୱନିପରି ସରୁ ହୋଇଛି । ଜନନୀ ପ୍ରଥମେ ଅନ୍ନ ଭୋଜନ ପାଇଁ ଦେଲେ । ଗୋବିନ୍ଦଚନ୍ଦ୍ର ଗ୍ରହଣ ନ କରିବାରୁ କ୍ଷୀର ପାନ କରିବା ପାଇଁ ଦେଲେ । ତାହା ମଧ୍ୟ ସେ ପାନ କଲେ ନାହିଁ । ସେତେ-ବେଳେ ଯାଇଁ ମୁକୁତା ଦେଈଙ୍କର ମନସ୍କାମନା ପୂର୍ଣ୍ଣ ହେଲା । ସେ ଖୁବ୍ ଆନନ୍ଦ ହେଲେ ଓ ହରଷିତ ମନରେ ପୁତ୍ରର ମୁଖ ଚୁମ୍ବନକଲେ ।

କିନ୍ତୁ ମୁକୁତା ଦେଈ ଚରିତ୍ରଟିରେ ରାଜ୍ୟରାଣୀ ବା ଦେଶପାଳିକା ଭାବରେ କବି ବିଶେଷ ପାରଦର୍ଶିତା ଫୁଟାଇ ପାରିନାହାନ୍ତି । ଗୋବିନ୍ଦଚନ୍ଦ୍ର ବଙ୍ଗ ଦେଶକୁ ଫେରି

ରାଜ୍ୟର ନାରଖାର ଅବସ୍ଥା ଦେଖିବାକୁ ପାଇଛନ୍ତି । ପୂର୍ବରୁ ଉଲ୍ଲେଖଅଛି ପ୍ରତାପରୁଦ୍ର ଦେବଙ୍କ ସମୟରେ ଓଡ଼ିଶାର ଅବସ୍ଥା ଯାହା ହୋଇଥିଲା ତାହାକୁ କବି ବଙ୍ଗରାଜ୍ୟ ମାଧ୍ୟମରେ ଦର୍ଶାଇଛନ୍ତି । କବି ସୁତକୁ ଯୋଗୀ କରିବାବେଳେ ହାଡ଼ିପା ସ୍ପଷ୍ଟଭାବରେ ପଚାରିଛନ୍ତି । ଗୋଟିଏ ବୋଲି ପୁତ୍ର, ତାହାକୁ ଯୋଗୀକଲେ ବଙ୍ଗ ଦେଶର ରାଜା କିଏ ହେବ ? ଦେଶବାସୀ ଓ ପରିବାର ଅନାଥ ହେବେ ଏବଂ ପରିଶେଷରେ ଯବନ ପ୍ରବେଶ କରିବେ ଓ ଏତେବଡ଼ ସଂପତ୍ତି ଭୋଗକରିବେ । ମାତ୍ର ମୁକୁତା ଦେଈ ସେତେବେଳେ ନିଜେ ରାଜ୍ୟ ପାଳନ କରିବାର ସାହାସ ପୋଷଣକରିଛନ୍ତି । * ଏପରି ସାହସିକତା ଅବଶ୍ୟ ଅଭିନନ୍ଦନୀୟ, ମାତ୍ର ରାଣୀ ତାହା ରକ୍ଷା କରି ପାରି ନାହାନ୍ତି । ରାଜ୍ୟଭାର ଗ୍ରହଣ କରିଛନ୍ତି, ମାତ୍ର ଭୁଲିଇ ପାରିନାହାନ୍ତି । ଗଜଦନ୍ତ ପଲଙ୍କରେ ଶୋଇଛନ୍ତି । ସୁବର୍ଣ୍ଣ ଥାଳିରେ ଖାଇଛନ୍ତି । ସାଧକ ପୁତ୍ରକୁ ସୁବର୍ଣ୍ଣ ଥାଳିରେ ଅନ୍ନ ପରଷିଛନ୍ତି । ମାତ୍ର ଦେଶ ନାରଖାର ହୋଇଯାଇଛି, ରକ୍ଷା କରି ପାରିନାହାନ୍ତି । କବି ମୁକୁତା ଦେଈଙ୍କୁ ମୁଖ୍ୟତଃ ସାଧିକା ଭାବରେ ଚିତ୍ରଣ କରିଥିବାରୁ ବାସ୍ତବବାଦୀ ଦୃଷ୍ଟି ନଷ୍ଟ ହୋଇଛି । ନାଥଧର୍ମ ସିଦ୍ଧ ପରମ୍ପରାରେ ଯେ ବଜ୍ର ଡାକିନୀ'ରୂପ ପରିକଳ୍ପିତ । ବଙ୍ଗ ଓ ଅନ୍ୟାନ୍ୟ ଭାଷାରେ ସୃଷ୍ଟ ରଚନାମାନଙ୍କରେ ମୁକୁତା ଦେଈଙ୍କୁ ରୁକ୍ଷ ପ୍ରକୃତିର ନାରୀ ଭାବରେ ଚିତ୍ରଣ କରାଯାଇଛି । ମୈନାବତୀ (ମୁକୁତା ଦେଈ) ଙ୍କର ଏପରି ଉଗ୍ର ସ୍ୱଭାବ ହେତୁ ପୁତ୍ର ଗୋବିନ୍ଦଚନ୍ଦ୍ର ତାଙ୍କୁ ଅକଥନୀୟ କଷ୍ଟ ଦେଇଛନ୍ତି । ମାତ୍ର ସେ ପରମ ସାଧିକା ଥିବାରୁ ମୃତ୍ୟୁଞ୍ଜୟୀ ଥିଲେ । ତେଣୁ ସ୍ୱାମୀଙ୍କ ମୃତ୍ୟୁପରେ ଯମ ପୁରକୁ ଯାଇଁ ଅଲୌକିକ କାର୍ଯ୍ୟ କରିବାରେ ସକ୍ଷମ ହୋଇଛନ୍ତି । ମାତ୍ର ଯଶୋବନ୍ତଙ୍କ ଲେଖାରେ ମୁକୁତା ଦେଈ ଏମାନଙ୍କଠାରୁ ପୃଥକ ।

ଯଶୋବନ୍ତ, ସାଧକ ଜୀବନର ଜ୍ୱଳନ୍ତ ପ୍ରମାଣ ଦେଇଛନ୍ତି ହାଡ଼ିପାଙ୍କ ଚରିତ୍ର ମାଧ୍ୟମରେ । ନାଥଧର୍ମର ପରଂପରାରେ ହାଡ଼ିପାଙ୍କ ନାମ ଜଳନ୍ଧରୀ ନାଥ । ଦୁର୍ଗାଙ୍କ ଅଭିଶାପରେ ସେ ହାଡ଼ି ଘରେ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଆ ସିଦ୍ଧ ସାହିତ୍ୟରେ ଜଳନ୍ଧରଙ୍କର ଭିନ୍ନ ଭିନ୍ନ ନାମର ଉଲ୍ଲେଖ ରହିଛି । ଏଥିରୁ ମନେ ହୁଏ ହାଡ଼ିପା ଜଣେ ସିଦ୍ଧ ସାଧକ ଥିଲେ ଓ ସେଥିପାଇଁ ଖୁବ୍ ଜନପ୍ରିୟ ହୋଇ ପାରିଥିଲେ । ତେଣୁ ମୁକୁତା ଦେଈ ପୁତ୍ର ପାଇଁ ହାଡ଼ିପାଙ୍କୁ ହିଁ ଗୁରୁଭାବେ ନିର୍ବାଚନ କରିଛନ୍ତି । ଗୋବିନ୍ଦ ଚନ୍ଦ୍ର ପ୍ରଥମେ ତାଙ୍କୁ ଗୁରୁ ଭାବରେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିବାରୁ ମୁକୁତା ଦେଈ ତାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ କହିଛନ୍ତି । ସତ୍ୟଯୁଗରେ ଅତିଶୟ ତପ କରିବାରୁ ସେ ଇନ୍ଦ୍ରପଦ ପାଇବାକୁ ମନ ବଳାଇଲେ, ତେଣୁ ବ୍ରହ୍ମାଙ୍କ ମନ ତୋଷି ବର ଭିକ୍ଷା କଲେ । ବ୍ରହ୍ମା ପ୍ରସନ୍ନ ହୋଇ ତାଙ୍କୁ କହିଲେ—ଘୋର ତପସ୍ୟା କରିବୁ ଓ ଷାଠିଏ ସହସ୍ର ବର୍ଷ ଅଗ୍ନିରେ

* ରାଜ୍ୟ ଆବୋରିଣ ମୁହିଁ ରାଜା ହୋଇଥିବି
ରହିତ ମାହୁନ୍ତ ସର୍ବ ପ୍ରକାରନ୍ତ ପାଳିବି ।
ଯଶୋବନ୍ତ ଦାସଙ୍କ ଗୋବିନ୍ଦଚନ୍ଦ୍ର—ସଂ-ଶ୍ରୀ ପ୍ରଦୀପ୍ତ କୁମାର ପଣ୍ଡା
ବୁକ୍ସ ଆଣ୍ଡ ବୁକ୍ସ—୧୯୮୩ -- ପଦ—୨୦୪

ପଶିବୁ । ପୁଣି କହୁଛନ୍ତି— "ଯତେ ଧୂଳି ମାଂସ ଯେବେ କପାଇବୁ ଦେହସ୍ଥ / ବସିବୁ ଅମର ପଦେ କେ କରିବ ନାହିଁ ।" ତେଣୁ ବ୍ରହ୍ମର୍ଷି ବ୍ରହ୍ମାଙ୍କ କଥାରେ ଘୋର ତପସ୍ୟା କଲେ ଓ ଅନଳରେ ଦୁଇପାଦ ସ୍ଥାପନ କଲେ । ପାଦ ଜଳିବାକୁ ଲାଗିଲା । କିନ୍ତୁ ସେ କିଛି ଯନ୍ତ୍ରଣା ଅନୁଭବ କଲେ ନାହିଁ । କ୍ରମେ କ୍ରମେ ଅଗ୍ନିଶିଖା ବସ୍ତାଗତ ହେଲା । ଯେତେ-ବେଳେ ନାଭି ମଣ୍ଡଳକୁ ସ୍ପର୍ଶ କଲା ସେତେବେଳେ ଆତ୍ମା ବୈକଳ୍ୟ ହେଲା । ବେଦବର ବ୍ରହ୍ମା କହିଲେ—ଏତେ ବଡ଼ ଋଷି ହୋଇ ଅଗ୍ନିର ତାପ ସହି ପାରିଲୁ ନାହିଁ । ତେଣୁ ବଙ୍ଗ ଦେଶରେ ଧନା ହାଡ଼ି ଘରେ ଜନ୍ମ ହେବାର ଅଭିଶାପ ପ୍ରାପ୍ତ ହୁଅ । ବ୍ରହ୍ମର୍ଷି ବିଚଳିତ ହେଲେ । ତତ୍‌କ୍ଷଣାତ୍ ବ୍ରହ୍ମାଙ୍କ ପାଦତଳେ ଲୋଟି ଯାଇ ମୁକ୍ତିର ଉପାୟ ଭିକ୍ଷା କଲେ । କହିଲେ, ଏତେ ବଡ଼ ଅଭିଶାପ ଯଦି ଦେଲ ତେବେ ମୁକ୍ତିର ବାଟ ମଧ୍ୟ ବତାଇ ଦିଅ । ବ୍ରହ୍ମା ସେତେବେଳେ କହିଥିଲେ—ତୁ କାହ୍ନୁପାଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ଜ୍ଞାନଲାଭ କରିବୁ । ଗୋବିନ୍ଦଚନ୍ଦ୍ର ରାଜାର ବାଡ଼ିତାଟି ଖଟିବୁ । ମାତ୍ର ସେହି କାର୍ଯ୍ୟ ତୋ ଆଜ୍ଞା ମାତ୍ରକେ ଅନ୍ୟ କେହି କରିଦେବ । ରାଜା ଗୋବିନ୍ଦଚନ୍ଦ୍ରଙ୍କୁ ସୁବୁଦ୍ଧି ଦେଲାପରେ ତୁ ସିଦ୍ଧିଲାଭ କରିବୁ । ସେତେବେଳେ ତୁ ଦେବତାଙ୍କ ସହ ସମାନ ହେବୁ । ତାଙ୍କର ଦୈବୀଶକ୍ତି ଓ କାର୍ଯ୍ୟ କ୍ଷମତା ପ୍ରତ୍ୟକ୍ଷରେ ଦେଖି ଗୋବିନ୍ଦଚନ୍ଦ୍ର ମାତାଙ୍କର କଥାକୁ ବିଶ୍ୱାସ କଲେ । ହାଡ଼ିପାଙ୍କ ଅଶେଷ ଅଲୌକିକ କାର୍ଯ୍ୟର ଦୃଷ୍ଟାନ୍ତ ଏ ପୁସ୍ତକରେ ରହିଛି । ଗୋବିନ୍ଦଚନ୍ଦ୍ର ପ୍ରଥମେ ଦେଖିଛନ୍ତି, ରାତି ପାହିବାରୁ ମରଡ଼ାଶାଳ ଉଦ୍ଦେଶ୍ୟରେ ହାଡ଼ିପା ଗୃହରୁ ବାହାର ହେଲେ । ପଛରେ ତାଙ୍କର ବାଳୁତ ପୁଅ ଆସିଲା ଓ ପାଖରେ ଥିବା ନଡ଼ିଆ ଗଛରୁ ପଇଡ଼ ପିଇବା ପାଇଁ ଇଚ୍ଛାକଲା ଓ ହାଡ଼ିପା ମନା କରିବାରୁ କଟାଳ କଲା । ତେଣୁ ବାଧ୍ୟ ହୋଇ ସେ ଗଛକୁ ପାଖକୁ ଆସିବାପାଇଁ ଆଦେଶ ଦେଲେ । ଗଛ ଆଜ୍ଞା ପାଳନ କଲା । ଗଛରୁ ପଇଡ଼ଟିଏ ତୋଳି ସେ ପୁଅକୁ ଦେଲେ । ପୁଅ ପୁନଶ୍ଚ ପଇଡ଼ ମାଗିବାରୁ ହାଡ଼ିପା ଗଛକୁ ପୂର୍ବପରି ଉପରକୁ ଚାଲିଯିବାକୁ କହିଲେ । ତତ୍‌କ୍ଷଣାତ୍ ସେ ପୂର୍ବାବସ୍ଥା ପ୍ରାପ୍ତ ହେଲା । ପୁଣି କୋଦାଳ ଓ କୁରଣ୍ଡିଇକି ଆଦେଶ ଦେଲେ ବାଡ଼ିତାଟି ଖଟିବା ପାଇଁ । ଆଜ୍ଞା ମାତ୍ରକେ ସେ ତାହା ପାଳନ କଲା । ମରଡ଼ାଶାଳ ସଫାକରି ନଗର ବାହାରେ ପକାଇଲା । ହାଡ଼ିପା ନିଜହୁଁ ପହରି ଓଳେଇ ନେଇ ଗୋବର ପାଣିରେ ଲିପିଦେଲା । ଗୋବିନ୍ଦଚନ୍ଦ୍ର ଦୂରରେ ଥାଇ ଏ ସମସ୍ତ ଲକ୍ଷ୍ୟକଲେ ଓ ହାଡ଼ିପାଙ୍କ ପ୍ରତି ଅତୀବ ପ୍ରୀତ ହେଲେ । ରାତିରେ ମୁକୁଟା ଦେଇ ପୁତ୍ରକୁ ସାଙ୍ଗରେ ଧରି ହାଡ଼ିପାଙ୍କ ପାଖକୁ ଗଲେ । ତାଙ୍କର ପାଦପୂଜା ପାଇଁ ଅଷ୍ଟରତ୍ନ ଗୁଞ୍ଜୁଡ଼ିରେ ଫୁଲମାଳ, ଚନ୍ଦନ, କର୍ପୂର ମଧ୍ୟ ନେଲେ । ଗୋବିନ୍ଦଚନ୍ଦ୍ର ପଦବନ୍ଦନା କରି ନିଜର ମନୋଭାବ ପ୍ରକାଶ କଲେ । ରାଜପୁତ୍ର ଶିଷ୍ୟ ହେବାକୁ ଆସିଛି ବୋଲି ସେ ଉଲ୍ଲସିତ ହୋଇ ନାହାନ୍ତି । ଆତ୍ମ-ବଡ଼ିମାଭାବ ଆଦୌ ମନରେ ସ୍ଥାନପାଇ ନାହିଁ । ବରଂ ବିନମ୍ର ଭାବରେ କହିଛନ୍ତି— "ସର୍ବତହୁଁ ପାପୀ ହୀନ ହାଡ଼ି ଜାତି ଗୋଟି, ମୋହର ଚରଣ ତଳେ କମ୍ପା ତୁମେ

ନେଇ ।'' ପ୍ରଭାତରୁ ଉଠି ମୋ ମୁହଁ ଯିଏଁ ଚାହେଁ, ତାକୁ ଦୋଷ ଲାଗେ । ସେ ପୁଣି ରାଜାଙ୍କର ସେବକ । କର୍ତ୍ତବ୍ୟରେ ହେଳା କଲେ ଶାସ୍ତି ତାଙ୍କର ପ୍ରାପ୍ୟ । *

ହାଡ଼ିପା, ମାତା ଓ ପୁତ୍ର ଉଭୟଙ୍କର ମତାମତ ପୃଥକ ଭାବରେ ଜାଣିପାରି କରିଛନ୍ତି । ପ୍ରଥମରୁ ଗୋବିନ୍ଦଚନ୍ଦ୍ରଙ୍କୁ ସ୍ପଷ୍ଟ ଭାବରେ କହି ଦେଇଛନ୍ତି ଯେ ସନ୍ନ୍ୟାସ ମାର୍ଗ ଅତି ଦୁର୍ଗମ । ଅରଣ୍ୟରେ ବୁଲିବା ଭୂମିରେ ଶୋଇବା, ଶ୍ମଶାନରେ ଏକାନ୍ତରେ ରହିବା, ଅଭକ୍ଷ୍ୟ ଭକ୍ଷିବା, ଯାନରେ ନ ଚଢ଼ି ପାଦରେ ଚାଲିବା, ନୀଚଜନ ଘରେ ପାଣି ନ ପିଇବା ଇତ୍ୟାଦି କଷ୍ଟକର କାର୍ଯ୍ୟ କରିବାକୁ ପଡ଼ିବ । ଗୋବିନ୍ଦଚନ୍ଦ୍ର ଏସବୁ କରିପାରିବାର ପ୍ରତିଶ୍ରୁତି ଦେବାପରେ ହାଡ଼ିପା ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିଛନ୍ତି । ସେ ଜଣେ ଉତ୍ତମ ଗୁରୁ ହୋଇଥିବାରୁ ଗୋବିନ୍ଦଚନ୍ଦ୍ରଙ୍କୁ ନେଇ ସାଙ୍ଗେ ସାଙ୍ଗେ ଦେଶାନ୍ତର ହୋଇ ନାହାନ୍ତି । ଗୋବିନ୍ଦଚନ୍ଦ୍ରଙ୍କର ମାନସିକ ପ୍ରସ୍ତୁତିପାଇଁ ନବର ବାହାର ମଣ୍ଡପରେ ସ୍ଥିରହିନ ରହିବାକୁ ନିର୍ଦ୍ଦେଶ ଦେଇଛନ୍ତି । ସାଙ୍ଗେ ସାଙ୍ଗେ ମାୟାକାଟି ଦେଶାନ୍ତର ହେବାକୁ ହୁଏତ କଷ୍ଟ ହୋଇଥାନ୍ତା । ଗୁରୁଙ୍କ ନାଥ, ଧର୍ମମତରେ ଶିଷ୍ୟଙ୍କୁ କପଟ ଦୀକ୍ଷିତ କରିବାକୁ ହୁଏ ସେହି କଳାଟି ହାଡ଼ିପାଙ୍କୁ ବେଶ୍ ଜଣାଥିଲା । ସନ୍ନ୍ୟାସୀର ଯାହା ବିଧିବିଧାନ ବା ଆଚରଣ ସେଗୁଡ଼ିକୁ ଶିଷ୍ୟ ଉପରେ ସେ ଜୋର କରି ଲଦି ଦେଇନାହାନ୍ତି । ବରଂ ତାଙ୍କୁ ମଙ୍ଗେଇ ନେଇଛନ୍ତି । ଗୋବିନ୍ଦଚନ୍ଦ୍ରଙ୍କୁ ଦୀକ୍ଷା ଦେବା ପରେ ସେ ଦକ୍ଷିଣା ପାଇବାକୁ ଇଚ୍ଛା କରିଛନ୍ତି । ଯେ କୌଣସି ବ୍ୟକ୍ତି ମନେ କରିବ ଯେ ଗୁରୁଦେବ ବୋଧହୁଏ ଅର୍ଥାକାରରେ ଦକ୍ଷିଣା ମାଗୁଛନ୍ତି । ଗୋବିନ୍ଦଚନ୍ଦ୍ର ମଧ୍ୟ ସେହିପରି ବୁଝି ସମଗ୍ର ବଙ୍ଗଦେଶକୁ ଦାନ କଲେ ବୋଲି କହିଲେ । ମାତ୍ର ହାଡ଼ିପା ଉତ୍ତର ଦେଲେ ଏସବୁରେ ମୋର କିବା ପ୍ରୟୋଜନ ? ଗୋବିନ୍ଦଚନ୍ଦ୍ର କହିଛନ୍ତି ତେବେ ଲକ୍ଷେ ସୁନା ଦକ୍ଷିଣା ସ୍ୱରୂପ ଦେବି । ହାଡ଼ିପା ତହିଁରେ ମଧ୍ୟ ରାଜି ହୋଇନାହାନ୍ତି । ଧନ ଠୁଳକଲେ ଲୋଭ ବଢ଼େ, ଧନଠାରୁ ଦୂରରେ ରହିଲେ ହିଁ ଭଗବାନଙ୍କ ପାଖରେ ମଣ୍ଡପରେ ବସି ହୁଏ । ତେଣୁ ବାଧ୍ୟହୋଇ ଗୋବିନ୍ଦଚନ୍ଦ୍ର କହିଲେ ତେବେ କ'ଣ ଦକ୍ଷିଣା ଦେବି ତାହା ଖୋଲି କୁହନ୍ତୁ । ପାଞ୍ଚ ଦୁଆର ବୁଲି ଭିକ୍ଷା ଆଣ ବୋଲି ହାଡ଼ିପା ନିର୍ଦ୍ଦେଶ ଦେଲେ । ଏଠାରେ କହିବାର ତାତ୍ପର୍ଯ୍ୟ ହେଉଛି, ରାଜପୁତ୍ର ଗୋବିନ୍ଦଙ୍କୁ ଭିକ୍ଷା ଆଣିବାପାଇଁ ହାଡ଼ିପା ସିଧାସଳଖ ଆଦେଶ ଦେଇ ନାହାନ୍ତି, ଗୁରୁ ଦକ୍ଷିଣା ଛଳରେ ସଂଗ୍ରହ କରିଛନ୍ତି । ଏହି ଅବସରରେ ସେ ଗୋବିନ୍ଦଚନ୍ଦ୍ରଙ୍କୁ କଷ୍ଟ ସହ୍ୟ କରିବା ଶିକ୍ଷା ଦେଇଛନ୍ତି । ଏହାପରେ ଆସ୍ତେ ଆସ୍ତେ

* ବାଡ଼ିଭାଟି ଖଟଣି ତୁମ୍ଭଙ୍କୁ କରେ ସେବା,
ଅପ୍ରାଧ ଉଚିତ ଜାଣି ଶାସ୍ତି ମୋତେ ଦେବା ।
ପ୍ରଭାତରୁ ଚାହିଁବ ଯେ ମୋହର ବଦନ,
ତାହାକୁ ଲାଗଇ ଦୋଷ ଶୁଣହେ ରାଜନ । (ପଦ-୧୧୬)

ସନ୍ନ୍ୟାସୀ ହେବା ଲାଗି ନିୟମ ଗୁଡ଼ିକ ଶିକ୍ଷା ଦେଇଛନ୍ତି । କାମ, କ୍ରୋଧ, ନିଦ୍ରା ପରିହାର କରିବାପାଇଁ ଓ ଅନ୍ନଜଳ ତ୍ୟାଗ କରି ପବନ ଆହାର କରିବା ପାଇଁ ମଧ୍ୟ ଉପଦେଶ ଦେଇଛନ୍ତି । ପୁଣି ଅନ୍ନ ଖାଇବାବେଳେ କେତେକ ଖାଦ୍ୟ ପରିହାର କରିବାକୁ ହେବ । ଶାକ, କାଞ୍ଜି, ଆମ୍ବିଳ, ତରକାରି ଓ ଲବଣ ବର୍ଜନୀୟ । ଉକ୍ତମ ଗୁରୁଠାରୁ ଶିକ୍ଷାପାଇ ଗୋବିନ୍ଦଚନ୍ଦ୍ର ସେସବୁ ପାଳନ କରିବାରେ ସକ୍ଷମ ହୋଇପାରିଛନ୍ତି । ଯୁବକ ଗୋବିନ୍ଦ-ଚନ୍ଦ୍ରଙ୍କୁ ସଂଯମ ଶିକ୍ଷା ଦେବା ଉଦ୍ଦେଶ୍ୟରେ ହାଡ଼ିପା ଇଚ୍ଛା କରି ରମ୍ଭା ଗଣିକା, ଧନା ଶୁଣ୍ଡି ଘରେ ନେଇ ତାଙ୍କୁ ରଖିଛନ୍ତି । ସେଠାରୁ ନିର୍ବିଘ୍ନରେ ମଧ୍ୟ ସେ ଉତ୍ତୀର୍ଣ୍ଣ ହୋଇଛନ୍ତି । ପରିଶେଷରେ ହାଡ଼ିପା ସିଦ୍ଧମୂଳ ଚହ୍ଲାଇଛନ୍ତି ଓ ଯୋଗାସନ ମନ୍ତ୍ରମାନ ଶିଖାଇଛନ୍ତି । ଗୋବିନ୍ଦଚନ୍ଦ୍ର ଯଦି ପାଦୁକା ମନ୍ତ୍ର ଶିକ୍ଷା କରିପାରନ୍ତି ତେବେ ଏ ମନ୍ତ୍ର ପଢ଼ି ଯେଉଁ ଆଡ଼କୁ ଯିବାକୁ ଚାହିଁବେ ସେ ସ୍ଥାନକୁ ଆପେ ଆପେ ଚାଲିଯିବେ । ଅଞ୍ଜନ ମନ୍ତ୍ରଦ୍ୱାରା ରାତିରେ ଯେତେ ଅନ୍ଧାର ହୋଇଥାଉ ପଛେ ଯୋଜନ ଯୋଜନ ପଥ ନିର୍ମଳ ଦିଶିବ । ସନ୍ନ୍ୟାସ ମନ୍ତ୍ର ପଢ଼ିଲେ ସର୍ଗପୁରକୁ ଉଡ଼ିଯାଇ ପାରିବେ । କୁହୁକ ମନ୍ତ୍ରଟିର ଶକ୍ତି ଅତି ଚମତ୍କାର ଏ ମନ୍ତ୍ର ସାଧନ କଲେ ଲୋକଙ୍କ ଗହଣରେ ଥିଲେ ମଧ୍ୟ ସେ ସମସ୍ତଙ୍କୁ ଦେଖୁଥିବେ, କିନ୍ତୁ ତାଙ୍କୁ କେହି ଦେଖି ପାରୁ ନଥିବେ । ଅନ୍ୟ ଏକ ମନ୍ତ୍ର ଅଛି ତାହା ପାଠ କଲେ କେହି ହାଣିଲେ ମଧ୍ୟ ଖଡ଼୍ଗ, ଗଦା ଭାଙ୍ଗିଯିବ ପଛକେ ତାଙ୍କର କିଛି ହେବନାହିଁ । ଅନ୍ନପୂର୍ଣ୍ଣା ମନ୍ତ୍ରଦ୍ୱାରା ଗୋଟିଏ ତଣ୍ଡୁଳ ରାନ୍ଧିଲେ ଲକ୍ଷେ ଲୋକ ଖାଇଲେ ମଧ୍ୟ ଅନ୍ନ ସରିବନାହିଁ । ଏପରି ଅନେକ ମନ୍ତ୍ର ହାଡ଼ିପା ଶିକ୍ଷା ଦେଲେ ଓ ଗୋବିନ୍ଦଚନ୍ଦ୍ର ମଧ୍ୟ ତାହା ହାସଲ କଲେ । ସିଦ୍ଧ ହେବାପରେ ପୁନଶ୍ଚ ହାଡ଼ିପା ଗୋବିନ୍ଦଚନ୍ଦ୍ରଙ୍କୁ ମାତାଙ୍କ ନିକଟକୁ ନେଇ-ଗଲେ । ମାତା ପୁଣି ତାଙ୍କୁ ପରୀକ୍ଷା କଲେ ।ହାତ ମୁଠାରେ ଥିବା ମାଟି ସଭୁତ ହୋଇଗଲା । ବୃକ୍ଷକୁ ଡାକଲେ ବୃକ୍ଷ ପାଖରେ ଆସି ପହଞ୍ଚିଲା, ଚାଲିଯାଅ କହିଲେ ପୁଣି ନିଜ ସ୍ଥାନକୁ ଚାଲିଗଲା । ତାଙ୍କର ଏପରି ଶକ୍ତି ଥିଲା ଯେ ଯାହାକୁ ମରିବାକୁ କହିବେ ସେ ମରିଯିବ, ମରିବା ଲୋକକୁ ବଞ୍ଚିବାପାଇଁ କହିଲେ ସେ ଉଠି ବସିବ । ଗୋବିନ୍ଦଚନ୍ଦ୍ର କାଳଜୟୀ ହେଲେ, ଯୁଗ ଯୁଗାନ୍ତ ପାଇଁ ସଦେହ ନେଇ ବଞ୍ଚିରହିଲେ ।

ଗୀତ ଗୋବିନ୍ଦଚନ୍ଦ୍ରର ପ୍ରଧାନ ଚରିତ୍ର ତିନି ଜଣଯାକ ହେଉଛନ୍ତି ସାଧକ । ଆଧ୍ୟାତ୍ମିକ ଜୀବନର ପ୍ରତିଷ୍ଠା ଯୋଗ ସାଧନ ମାଧ୍ୟମରେ କାଳଜୟୀ ହେବାର ଅଭିପ୍ସା ଏମାନଙ୍କର ମୂଳଲକ୍ଷ୍ୟ । ତେଣୁ ଏହି ପୁସ୍ତକରେ ଯୋଗ ସାଧନାର ବିସ୍ତୃତ ବର୍ଣ୍ଣନା ସହିତ କାଳଜୟୀ ହେବା କଥାଟି ବାରମ୍ବାର ଉଲ୍ଲେଖ ହୋଇଛି । ହାଡ଼ିପା ମୁକ୍ତା ଦେଈ ଓ ଗୋବିନ୍ଦଚନ୍ଦ୍ର ପ୍ରତ୍ୟେକ ମୃତ୍ୟୁ ସଚେତନ ହୋଇଛନ୍ତି । ଗୋବିନ୍ଦଚନ୍ଦ୍ରଙ୍କୁ ସନ୍ନ୍ୟାସ ବ୍ରତ ପ୍ରତି ଆକୃଷ୍ଟ କରିବାପାଇଁ, ମୁକ୍ତା ଦେଈ ପ୍ରଥମେ 'ସମସ୍ତରେ ପୁଣି ବୃଦ୍ଧ ହୋଇବୁ ନିଧନ' କଥାଟି କହିଛନ୍ତି । ପୁଣି ଏ କଥା ଶୁଣି ଗୋବିନ୍ଦଚନ୍ଦ୍ର ମୁଖ ଦର୍ଶନ କରୁଥିବା ଦର୍ପଣ ତାଙ୍କ ହାତରୁ ଖସି ପଡ଼ିଥିଲା । ଅର୍ଥାତ୍ ତାଙ୍କୁ ଯେ ମୃତ୍ୟୁ ମୁଖରେ ପଡ଼ିବାକୁ ହେବ ଏହା

ଯେପରି ସେ ବିଶ୍ୱାସ କରି ପାରୁନଥିଲେ । ମାତା ପୁନର୍ବାର କହିଛନ୍ତି । ପିଣ୍ଡ ମୋକ୍ଷ କରି ଯେବେ ଧର୍ମ କରିବ ତେବେ ଚିର ଆୟୁଷ ପ୍ରାପ୍ତ ହେବ । ଗୋବିନ୍ଦଚନ୍ଦ୍ର ମଧ୍ୟ ପ୍ରାଣମୂର୍ଚ୍ଛା ସାଧନା କରିଛନ୍ତି ଅମର ହେବାପାଇଁ । * ହାଡ଼ିପା ମଧ୍ୟ ତାଙ୍କୁ ସେହିପରି ଯୋଗ ଶିକ୍ଷା ଦେଇଛନ୍ତି ଯେପରି ସେ କାଳଜୟୀ ହେବେ । ସେଥିପାଇଁ ସେ କହିଛନ୍ତି, ନାସାଗ୍ର ସିଦ୍ଧ ନାଭିକୁ ସ୍ପର୍ଶ କରିପାରିବ ତେବେ ପିଣ୍ଡରୁ ପ୍ରାଣ ଛାଡ଼ିବ ନାହିଁ । କିଛିବର୍ଷ ପରେ ଗୁରୁ ଅନୁଭବ କରିଛନ୍ତି ଯେ ଗୋବିନ୍ଦଚନ୍ଦ୍ର ସିଦ୍ଧ ହୋଇ ସାରିଛନ୍ତି । ତେଣୁ ଗୋବିନ୍ଦଚନ୍ଦ୍ରଙ୍କ ସଙ୍ଗରେ ହେନ ବଙ୍ଗ ଦେଶକୁ ଫେରିବା ବେଳେ ଗୁରୁ ଏହି କଥା ପ୍ରକାଶ କରିଛନ୍ତି । ** ତେଣୁ ମନେହୁଏ ଗୋବିନ୍ଦଚନ୍ଦ୍ରଙ୍କୁ ଅମର କରାଇବା ହାଡ଼ିପାଙ୍କ ମୂଳ ଉଦ୍ଦେଶ୍ୟ ଥିଲା । ନୈତିକ ହାସଲ ହେବା ପରେ ମା' ପୁଅଙ୍କୁ ଏକ ସ୍ଥାନରେ ରଖି ସେ ଅନ୍ୟତ୍ର ଚାଲିଯିବାକୁ ଇଚ୍ଛା କରିଛନ୍ତି । ଗୋବିନ୍ଦଚନ୍ଦ୍ର ସିଦ୍ଧ ହୋଇ ସାରିବା ପରେ ଯମପୁରକୁ ଯାଇଛନ୍ତି । ଜମୁପତି ତାଙ୍କୁ ଦେଖି ଆସନ ତ୍ୟାଗ କରିଛନ୍ତି ଓ ଗୋବିନ୍ଦଚନ୍ଦ୍ର କାଳ ପାଶରୁ ମୁକ୍ତ ହୋଇ ସାରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । କବି ଯଶୋବନ୍ତ କାବ୍ୟର ପରିସମାପ୍ତିରେ ପୁନଃ ଗୋବିନ୍ଦଚନ୍ଦ୍ରଙ୍କର ଯଶୋଗାନ ପ୍ରସଙ୍ଗରେ ତାଙ୍କର ଅମରତ୍ୱର କଥା ଉଲ୍ଲେଖ କରିଛନ୍ତି । *** ମୃତ୍ୟୁକୁ ଜୟ କରିବା ପ୍ରାଣୀର ଚରମ ସିଦ୍ଧି ହୋଇଥିବାରୁ "ତୁମ୍ଭର ଆଜ୍ଞାରେ ମୋର ପିଣ୍ଡ ହେଉ ସିଦ୍ଧି" କହି ଭଗ୍ନୀପତିଙ୍କ ନିକଟରେ ନିଜର ଅମରତ୍ୱ ପ୍ରାର୍ଥନା କରିଛନ୍ତି । ଏ ସମସ୍ତ ବର୍ଣ୍ଣନାକୁ ଅନୁଧ୍ୟାନ କଲେ ମନେହୁଏ ଉତ୍କଳୀୟ ବୈଷ୍ଣବମାନେ ମୃତ୍ୟୁଞ୍ଜୟୀ ହେବାକୁ ପ୍ରୟାସ କରୁଥିଲେ । ସେମାନେ ମୋକ୍ଷକାମୀ ହେବା ଅପେକ୍ଷା ଜୀବନ ସଂବେଦୀ ହେବାକୁ ଯତ୍ନ କରୁଥିଲେ । ମର୍ତ୍ତ୍ୟ ମଣ୍ଡଳରେ ବଞ୍ଚି ରହିବାକୁ ସେମାନେ ଚାହୁଁଥିଲେ, ମାତ୍ର ସାଧକର ଜୀବନ ନେଇ, ସଂଭୋଗ ପାଇଁ ନୁହେଁ । ସେମାନେ ମୁକ୍ତିକାମୀ ମଧ୍ୟ ଥିଲେ । କିନ୍ତୁ ଦେହାନ୍ତର ପରେ ନୁହେଁ, ସଦେହରେ ସ୍ୱର୍ଗ ଗମନ ଇଚ୍ଛା କରୁଥିଲେ ।

ଏତଦ୍ ବ୍ୟତୀତ ଏହି କାବ୍ୟରେ କେତୋଟି ଗୌଣ ଚରିତ୍ରର ଅବତାରଣା କରାଯାଇଛି । ଏମାନଙ୍କ ମଧ୍ୟରୁ ଅନେକେ ବାସ୍ତବ ଧର୍ମୀ ଚରିତ୍ର । ଖେଦମା, ଗୋଦମାଙ୍କ ସମ୍ପର୍କରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ଏମାନେ ବାସ୍ତବବାଦୀ ଦୁଇଟି ଚରିତ୍ର ।

---

* ଯୋଗ ସାଧି ଅଜାମର କରିବି ଶରୀର ।
ସେହି କଥା ମନରେ ସେ ଥୁଅଇ ମୋହର । (ପଦ-୬୨୧)

** ହାଡ଼ିପା ବୋଇଲେ ବାବୁ ହୋଇଲୁ ଅମର
ସେବେ ମାସେ ପୋଏ ତୁମ୍ଭେ ଯାଅ ଏକଠାର । (ପଦ-୯୬୮)

*** ତୁ ଯେ ଯମରାଜ ଦଣ୍ଡ ନିବାରିଲୁ କାଳେ
ନିଜ ଦେହ ଯେହ ଅଛୁ ଯୁଗ ଯୁଗାନ୍ତରେ । (ପଦ-୧୦୫୫)

ଜୀବନର ବାସ୍ତବ ଦିଗକୁ ହିଁ ଏମାନେ ଅବଲୋକନ କରିଛନ୍ତି । ଅବଶ୍ୟ ମୁକ୍ତା ଦେଇଙ୍କ-ଠାରୁ ମହାମନ୍ତ୍ର ଦୀକ୍ଷା ଗ୍ରହଣ କରି ଏମାନେ ଜ୍ଞାନ ଲାଭ କରିଛନ୍ତି । ଗୋବିନ୍ଦଚନ୍ଦ୍ରଙ୍କ ବିରହ ଦୁଃଖକୁ ଭୁଲି ଶାଶୁ ମୁକ୍ତା ଦେଇଙ୍କୁ କହିଛନ୍ତି "ଦେଶାନ୍ତରେ ଯାଉ ରାଜା ସାକ୍ଷ ହେଉ ଧର୍ମ ।" ରମ୍ଭା ଗଣିକା ଓ ଧନାଶୁଣି ସ୍ତ୍ରୀ ଉଭୟେ ହେଉଛନ୍ତି କାମୁକା ନାରୀ । ତେଣୁ ଦେହ ସଂଯୋଗ ଛଡ଼ା ମାନବର ସାତ୍ତ୍ୱିକ ଦିଗ ପ୍ରତି ଏମାନେ ଆଖି ବୁଜି ଦେଇଛନ୍ତି । କିନ୍ତୁ କୈବର୍ତ୍ତୀ ଚରିତ୍ରଠାରେ କବି ଆଦର୍ଶ ଓ ବାସ୍ତବର ମନୋଜ୍ଞ ସମନ୍ୱୟ ଆଣିଛନ୍ତି । କୈବର୍ତ୍ତୀ ଅହରହ କର୍ମରତ, ମାତ୍ର ତାହା ସାତ୍ତ୍ୱିକ କର୍ମ । ଧନ ଅର୍ଜନ କରେ, କିନ୍ତୁ ଦାନ କରେ । ତା' ପାଇଁ ଘରଦ୍ୱାର ଛାଡ଼ି ସନ୍ନ୍ୟାସିନୀ ହେବାର ପ୍ରୟୋଜନୀୟତା ନାହିଁ । ତା ଜୀବନ ଦର୍ଶନ ହେଉଛି ସମୁଦାୟ ଗୋବିନ୍ଦଚନ୍ଦ୍ର ପୁସ୍ତକର ଦର୍ଶନ । କବି ପୁସ୍ତକର ପରିଶେଷରେ ଆଉ ଦୁଇଜଣ ସନ୍ଥ ଚରିତ୍ରର ଅବତାରଣା କରିଛନ୍ତି । ସେ ଦୁଇଜଣ ହେଉଛନ୍ତି ସହଜସିଦ୍ଧ ଜଳନ୍ଧରୀପା ଓ ନାଥଧର୍ମୀ ଗୋରେଖ ନାଥ । ଏମାନେ ସିଦ୍ଧ ସାଧକ କିନ୍ତୁ ସେମାନେ ନିଜ ନିଜର ପାରଦର୍ଶିତା ପ୍ରଦର୍ଶନ କରିବାରେ ତତ୍ପର । ଏମାନେ ପରସ୍ପରର ଶକ୍ତି ପରୀକ୍ଷା କରିବା ପାଇଁ ଅଗ୍ରଣୀ । ଏ ପରୀକ୍ଷା ପୁଣି ସାଧାରଣ ମଣିଷର ପ୍ରତିଯୋଗିତା ସ୍ତରରେ ପହଞ୍ଚିଛି । ଏପରି ପ୍ରସଙ୍ଗର ଅବତାରଣା କାହିଁକି କରାହୋଇଛି ବୁଝିହୁଏନା । ଶେଷରେ ଗୋରେଖ ନାଥଙ୍କର ଜୟ ହୋଇଥିବାରୁ ମନେ ହୁଏ କବି ହୁଏତ ନାଥ ଧର୍ମର ପରାକାଷ୍ଠା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଏପରି ବର୍ଣ୍ଣନା କରିଛନ୍ତି । ଅନ୍ୟ ଏକ କାରଣ ହୋଇପାରେ ଯେ ତତ୍କାଳୀନ ସମାଜରେ ଏପରି ଶକ୍ତି ପରୀକ୍ଷା ବିଶେଷ ଭାବରେ ପ୍ରଚଳିତ ଥିଲା । ବୌଦ୍ଧ ବ୍ରାହ୍ମଣ୍ୟ ଧର୍ମର ସାଧକମାନଙ୍କ ମଧ୍ୟରେ ଏପରି ଶକ୍ତି ପରୀକ୍ଷା ହେଉଥିଲା । ଏପରିକି ଯଶୋବନ୍ତ ଓ ସାଲବେଗଙ୍କର ଅଲୌକିକ କର୍ମର ପ୍ରତିଯୋଗିତା ଚାଲିଥିବା ବିଷୟ ଜନଶ୍ରୁତିରୁ ମିଳିଥାଏ । ତେବେ ଏପରି ଦୁଇଟି ଚରିତ୍ର ସୃଷ୍ଟିର ଗୁରୁତ୍ୱ ବିଶେଷ କିଛି ନାହିଁ ।

ଗୀତ ଗୋବିନ୍ଦଚନ୍ଦ୍ରର କବିତ୍ୱ, ପ୍ରକାଶଭଙ୍ଗୀ ଓ ଭାଷାର ସରଳତା ହେତୁ ଏହା ଜନପ୍ରିୟ ହୋଇପାରିଛି । କଥିତ ଭାଷାର ପ୍ରୟୋଗ ଏହାର ଏକ ଆକର୍ଷଣୀୟ ଦିଗ । ପଞ୍ଚସଖାଙ୍କ ପୂର୍ବରୁ ଲୋକ ଭାଷାରେ ଯାହା ସବୁ ରଚିତ ହୋଇଥିଲା ତାହା ପଣ୍ଡିତ ଗୋଷ୍ଠୀଙ୍କ ଦୃଷ୍ଟିରେ ଇତର ପ୍ରାପ୍ତ ହୋଇଥିଲା । ତଥାପି ଏ ଦିଗରେ ସାରଳା ଦାସ ଓ ବତ୍ସା ଦାସ ସ୍ମରଣୀୟ ହୋଇ ପାରିଥିଲେ । ଏମାନଙ୍କ ପ୍ରସ୍ତୁତ ଭିତ୍ତି ପ୍ରସ୍ତର ଉପରେ ପଞ୍ଚସଖା ସୌଧ ନିର୍ମାଣର ସାହସିକ ପଦକ୍ଷେପ ଗ୍ରହଣ କରି ସଫଳତା ଅର୍ଜନ କଲେ । ଏମାନଙ୍କର ସଂସ୍କୃତ ଭାଷାରେ ଅବାଧ ପ୍ରବେଶ ଥିଲା । ତେଣୁ ସେମାନେ ନିର୍ଭୟରେ ସଂସ୍କୃତ ସାହିତ୍ୟର ଅବଲମ୍ବନରେ କେତେକ ରଚନା ଲୋକ ଭାଷାରେ ସୃଷ୍ଟି କଲେ ଏବଂ ସଂସ୍କୃତ ଭାଷା ଓ ପଣ୍ଡିତମାନଙ୍କୁ ଭୟ ନ କରି ଲୋକ ପ୍ରଚଳିତ ଭାଷାକୁ ସମୃଦ୍ଧ କରିବାରେ ପ୍ରୟାସ କରିଥିଲେ । ତେଣୁ ଯେଉଁ ସମାଲୋଚକମାନେ କହନ୍ତି ଯେ

ପଞ୍ଚସଖାଙ୍କ ରଚିତ ପୋଥିଗୁଡ଼ିକ କେବଳ ତତ୍ତ୍ୱସିଦ୍ଧିତ ଏବଂ ସଂପୂର୍ଣ୍ଣ ସତ୍ୟ ନୁହେଁ । ପଣ୍ଡିତ ଗୋଷ୍ଠୀ ବା ତତ୍ତୁଲ୍ୟ ମତବାଦୀମାନେ କେବଳ ଏହି ଦୃଷ୍ଟିକୋଣ ପୋଷଣ କରିଥାଆନ୍ତି । "ମାତ୍ର ଅନ୍ୟପକ୍ଷରେ ଜୀବନର ଏକ ସମଗ୍ର ଭୂମି ଉପରେ ଯାବତୀୟ ଭାବଗତ ଓ ଦୃଷ୍ଟିଗତ ଆଲୋଡ଼ନର ପ୍ରନ୍ତଗୁଡ଼ିକରେ ସାହିତ୍ୟ ତଥାପି ଏକ ଖିଅ ଲଗାଇ ଜୀବନକୁ ତଥା ଆପଣାକୁ ଯଥାର୍ଥରେ ସମୃଦ୍ଧ କରି ପାରିବ ବୋଲି ସ୍ୱୀକାର କରିନେଇ ପାରିଲେ । ପଞ୍ଚସଖା ସାହିତ୍ୟ ମଧ୍ୟ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଏକ ସାହିତ୍ୟ ବୋଲି ଅବଶ୍ୟ ଅନୁଭୂତ ହେବ ।" † ତେଣୁ ପଞ୍ଚସଖା ସାହିତ୍ୟ କେବଳ ତତ୍ତ୍ୱ ନୁହେଁ । ଯଶୋବନ୍ତଙ୍କ ରଚନାରେ ମଧ୍ୟ କବିତ୍ୱର ସ୍ଫୁରଣ ଘଟିଛି । ଗୋବିନ୍ଦଚନ୍ଦ୍ରରେ ରସସୃଷ୍ଟି, ଆବେଗ ପ୍ରବଣ ଘଟଣାର ଉପସ୍ଥାପନା ସରଳ ଭାଷା ବିନ୍ୟାସ ସହିତ ବର୍ଣ୍ଣନା ପଟୁତା ଓ ଆଲଙ୍କାରିକତାର ସଂଯୋଗ ହୋଇଛି । ଏଥିରେ ରୀତିଯୁଗୀୟ ଜଟିଳ ଅଳଙ୍କାରର ବହୁଳତା ଦୃଷ୍ଟି ଗୋଚର ହୁଏ ନାହିଁ । ଆଖିଆଗରେ ପରିଦୃଷ୍ଟ ଜଗତରୁ କେତୋଟି ବସ୍ତୁକୁ ଉପମା ଭାବରେ ବ୍ୟବହାର କରିଛନ୍ତି । ଗୋବିନ୍ଦଚନ୍ଦ୍ର ଯୋଗୀ ହେବାଶୁଣି ରାଣୀଦ୍ୱୟ ମୂଳରୁ କଟା ହୋଇଥିବା ବୃକ୍ଷପରି ଭୂମିରେ ଲୋଟିଗଲେ । ଗୋବିନ୍ଦଚନ୍ଦ୍ରଙ୍କ ସହିତ ରାଣୀଦ୍ୱୟ ଯିବାକୁ ଜଗର କରିବାରୁ ରାଜା ଉପମାଦ୍ୱାରା ଦୃଷ୍ଟାନ୍ତ ଦେଇଛନ୍ତି । ଯେପରି ବିଜୁଳି ବା ପବନକୁ ହାତରେ ଧରିବା ଅସମ୍ଭବ । ରାଣୀ ତୁହେଁ ମଦନ ବାଣର ଯନ୍ତ୍ରଣା ସହ୍ୟ କରିବା ସେହିପରି ଅସମ୍ଭବ । †† ପୁଣି ମୁକ୍ତା ଦେଇ ବିଭିନ୍ନ ଦୃଷ୍ଟାନ୍ତ ମାଧ୍ୟମରେ ପୁତ୍ରକୁ ଯୋଗୀ ହେବାକୁ ପ୍ରବର୍ତ୍ତାଇଛନ୍ତି । ଏହି ପ୍ରସଙ୍ଗରେ ସ୍ୱାମୀ ରୂପଚନ୍ଦ୍ର ରାଜାଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ରୂପଚନ୍ଦ୍ର ରାଜା, ଗୋବିନ୍ଦଚନ୍ଦ୍ରଙ୍କଠାରୁ ଶତଗୁଣ ସୁନ୍ଦରଥିଲେ । ତାଙ୍କର ଦେହର ଜ୍ୟୋତିରେ ଅନ୍ଧାର ଦୂର ହୋଇ ଆଲୋକିତ ହେଉଥିଲା । ମାଣିକ୍ୟ ସମକକ୍ଷ ହୋଇ ନ ପାରି ଭସ୍ମୀଭୂତ ହେଉଥିଲା । ††† ସେ ରାଜ ମଧ୍ୟ ବିନାଶପ୍ରାପ୍ତ ହେଲେ, ଦେହତ୍ୟାଗ କଲେ । କାମିନୀ ମୋହ ତ୍ୟାଗକରି ସନ୍ନ୍ୟାସୀ ହେବାପାଇଁ ମାତା ପୁତ୍ରକୁ ପୁନଶ୍ଚ ଉପମା

---

† ଚିତ୍ତରଞ୍ଜନ ଦାସ—ସନ୍ଥ (ଭକ୍ତ) ସାହିତ୍ୟ—ପୃ ୪୬୪
ଓଡ଼ିଶା ସାହିତ୍ୟ ଏକାଡ଼େମୀ—୧୯୮୨

†† ତୁମ୍ଭେଯେ ମଦନ ବାଣ ନ ପାରିବ ସହି
ବିଜୁଳି ପବନ କାହିଁ ହସ୍ତେ ଧରା ହୋଇ ।
(ପଦ ୩୬୮)

††† ଅନ୍ଧାର ଦଣେ ଆଲୋକ ମାଣିକ୍ୟର ହ୍ରାସ
ସେହି କାଳେ ନରହି ହୋଇଲା ପ୍ରାଣେ ନାଶ ।
(ପଦ ୭୨)

ମାଧ୍ୟମରେ ଦୃଷ୍ଟାନ୍ତ ଦେଇଛନ୍ତି । * ପୃଥିବୀ କ୍ଷଣସ୍ଥାୟୀ, ସେଥିରେ ପୁଣି ଶରୀର ଆଶୁ ବିନାଶଶୀଳ । ବରଷାର ପାଣି ଫୋଟକା ଗୁହୁଁ ଗୁହୁଁ ମିଳେଇ ଯାଏ । ଫୋଟକାଟି କିପରି ଓ କେଉଁଠୁ ସୃଷ୍ଟି ହୁଏ । ପୁଣି ଫାଟିଗଲା ପରେ ତାହା କେଉଁଠି କି ଲୁଚିଯାଏ ତାହା ଜାଣିବା କଷ୍ଟ ସେହିପରି ଏ ଶରୀର । † ମାୟା ଶରୀର ପ୍ରତି ଆକୃଷ୍ଟ ହେବା ତେଣୁ ଉଚିତ୍ ନୁହେଁ । ପୁତ୍ରକୁ ଏହିପରି ଭାବରେ ପ୍ରବୋଧନା ଦେଇଥିଲେ ମଧ୍ୟ ପରମୁହୂର୍ତ୍ତରେ ତାଙ୍କ ମନରେ ଅସ୍ଥିରତା ଦେଖା ଦେବାରୁ ଗୋବିନ୍ଦଚନ୍ଦ୍ର ଆଶ୍ୱାସନା ଦେଇଛନ୍ତି । ସେ ମଧ୍ୟ ଆଲଙ୍କାରିକ ଛଟାରେ ମାତାଙ୍କୁ ବୁଝାଇବାକୁ ଚେଷ୍ଟା କରିଛନ୍ତି । ସେତେବେଳକୁ ରାଜା ହାଡ଼ିପାଙ୍କଠାରୁ ଦୀକ୍ଷା ଗ୍ରହଣ କରିସାରିଛନ୍ତି । ତେଣୁ ଯୋଗୀ କରି ସାରି ଦୁଃଖ କରିବା ନିରର୍ଥକ । ବୋଇତରେ ପଦାର୍ଥ ଧରି ଯାଉଥିବାବେଳେ ତାହା ଯଦି ଆଘାତ ପ୍ରାପ୍ତ ହୋଇ ଭାଙ୍ଗିଯାଏ ତେବେ ସମସ୍ତ ଦ୍ରବ୍ୟ ନଷ୍ଟ ହୁଏ । ମହାସମୁଦ୍ର ମଧ୍ୟରୁ ଦ୍ରବ୍ୟ ଫେରି ପାଇବା କଷ୍ଟକର ବ୍ୟାପାର । ସେହିପରି ଗୋବିନ୍ଦଚନ୍ଦ୍ରଙ୍କ ପ୍ରତି ଆସକ୍ତ ନ ହୋଇ ତାଙ୍କୁ ତ୍ୟାଗ କରିବା ଉଚିତ୍ । †† ରେବମା, ଗୋଦମା ଏ ଘଟଣାରେ ଖୁବ୍ ଦୁଃଖ କରିଛନ୍ତି । ଗଛ କାଟିଲା ପରି ଭୂଇଁରେ ଲୋଟି ପଡ଼ିଛନ୍ତି । ପୁଣି ଉଠି ରାଜାଙ୍କୁ ବହୁଭାବରେ ଭୁଲାଇଛନ୍ତି । ରାଜାଙ୍କ ଅବର୍ତ୍ତମାନରେ ତାଙ୍କର ଅବସ୍ଥା ଯେ କ'ଣ ହେବ ତାହା ବିଭିନ୍ନ ଦୃଷ୍ଟାନ୍ତ ମାଧ୍ୟମରେ ବୁଝାଇବା ପାଇଁ ଚେଷ୍ଟା କରିଛନ୍ତି । ପ୍ରାଚୀନ ଓ ମଧ୍ୟ ଯୁଗୀୟ କବିମାନେ ସାଧାରଣତଃ ଯେଉଁ ଉପମାଦିକୁ ଗ୍ରହଣ କରନ୍ତି ଯଶୋବନ୍ତ ମଧ୍ୟ ସେହିପରି ତାରା, ଚନ୍ଦ୍ର, ଜଳ, ମୀନ ଇତ୍ୟାଦିକୁ ଉପମାର ଭାବବସ୍ତୁ ଭାବରେ ନିର୍ବାଚନ କରିଛନ୍ତି । କବି କଳ୍ପନା କରିଛନ୍ତି, ଜଳ ବିହୁନେ ମୀନ ଓ ଚନ୍ଦ୍ରମା ନ ଥିବା ତାରା ସଦୃଶ ରାଣୀ ଦୁଇଜଣଙ୍କର ଅବସ୍ଥା ହେବ । †††କେବଳ ପରିବାର ବର୍ଗ ନୁହନ୍ତି, ଦେଶବାସୀମାନେ ମଧ୍ୟ ଗୋବିନ୍ଦଚନ୍ଦ୍ର ସନ୍ନ୍ୟାସବ୍ରତ ଗ୍ରହଣରେ ଖୁସି ହୋଇ ପାରିନାହାନ୍ତି । ତେଣୁ ରାଜାଙ୍କୁ ଅନୁରୋଧ କରିଛନ୍ତି ରାଜ ନଗରକୁ ଫେରି ଆସିବା ପାଇଁ । କୁଳରକ୍ଷା ନିମନ୍ତେ ସନ୍ତାନ ନିହାତି ପ୍ରୟୋଜନ ।

---

* ଜଉ ସଜଳସ ଯେହ୍ନେ ଅଗ୍ନି ତାପେ ପାଣି,
ପୁରୁଷ ଦେହକୁ ଅଗ୍ନି ପରାୟେ ତରୁଣୀ । (ପଦ ୧୬୩)

† ବରଷାରେ ପାଣିଥୋପା ଯେସନେ ଉତ୍ପନ୍ନ,
କେଣେ ଲୁଚିଯାଇ ନ ଦିଶଇ ରେଖ ବର୍ଣ୍ଣ । (ପଦ ୧୬୮)

†† ସିନ୍ଧୁର ଲହରୀ ଘାତେ ଭାଙ୍ଗିଲା ବୋଇତ,
କୂଳରେ ନ ଲାଗି ସର୍ବ ଦ୍ରବ୍ୟ ଗଲା ହତ ।
ମୋତେ ସେହିମତ କରି ମୂରୁଛ ଗୋ ମାୟେ,
ସମୁଦ୍ରେ ଲୁଚିଲା ଭେଳା ଲେଉଟିଲେ କି ପାଏ । ପ—୨୩୪-୩୫

††† ଜଳ ଶୁଖିଗଲେ କାହିଁ ମୀନ ଜୀବ ରକ୍ଷା,
ଚନ୍ଦ୍ରମା ନ ଥିଲେ ତାରା ନୋହିବେ ସେ ଲେଖା । (ପଦ-୩୪୧)

ସେଇ ପ୍ରସଙ୍ଗରେ ସେମାନେ ରାଜାଙ୍କୁ କହିଛନ୍ତି, ଅପୁତ୍ରିକର ମୁହଁ ଚାହିଁବା ଦୋଷାବହ । କିଂତୁ ରାଜା ସେଥିରେ ରାଜି ହୋଇ ନାହାନ୍ତି । ବୃକ୍ଷର ମୂଳ ନାଶ କଲେ ଡାଳର ବା କି ପ୍ରୟୋଜନ ଅଛି ? ※ କବି ଅନେକ ସ୍ଥଳରେ ଏପରି ବର୍ଣ୍ଣନା କରିଛନ୍ତି ଯହିଁରୁ ତାଙ୍କର କବିତ୍ୱର ପରିଚୟ ମିଳେ । ସରଳ ଭାଷା ତଥା ଜଗତର ଉପମାକୁ ନେଇ ଏପରି ଉପସ୍ଥାପନା କରିଛନ୍ତି ଯହିଁରେ ମାନବିକ ଆବେଦନର ସ୍ପର୍ଶ ଅନୁଭବ କରିହୁଏ । ରମ୍ଭା ଗଣିକା; ତା'ର କାର୍ଯ୍ୟକଳାପ ଜନନେତ୍ରରେ ଘୃଣ୍ୟ ନିଶ୍ଚୟ । ତଥାପି କବି ତା' ମନର ବ୍ୟାକୁଳତା ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । † ରମ୍ଭାର ଶତଚେଷ୍ଟା ସତ୍ତ୍ୱେ ଗୋବିନ୍ଦଚନ୍ଦ୍ରଙ୍କ ସ୍ଥିତପ୍ରଜ୍ଞ ଭାବ ରମ୍ଭା ମନରେ ବୈରାଗ୍ୟ ଜାତ କରାଇଛି ।

କେତେକ ସ୍ଥଳରେ କବି ଚରିତ୍ରମାନଙ୍କର ରୂପ ବର୍ଣ୍ଣନା ମାଧ୍ୟମରେ କବିତ୍ୱର ନିଦର୍ଶନ ଦେଇଛନ୍ତି । ରମ୍ଭା, ଗୋବିନ୍ଦଚନ୍ଦ୍ରଙ୍କ ରୂପ ଦେଖି ମୁଗ୍ଧ ହୋଇଛି ଏବଂ ସନ୍ଦେହ ହୋଇଛି, ଏ ଜଣେ ସାଧାରଣ ଲୋକ ନୁହେଁ । ହୁଏତ ସ୍ୱର୍ଗର ଗନ୍ଧର୍ବ, ରାଜପୁତ୍ର କିଂବା ଉଚ୍ଚକୁଳ ଜାତ ଏକ ମହାନ ବ୍ୟକ୍ତି । ତାଙ୍କର ଅଧର, ନାସିକା, ଦନ୍ତପଂକ୍ତି, ଲଲାଟ, ଚକୁର ଓ ବାହୁଦଣ୍ଡ ଇତ୍ୟାଦି ପ୍ରତ୍ୟେକଟି ଅବୟବରୁ ଜଣାଯାଉଥିଲା ଯେ ସେ ଅସାଧାରଣ ମାନବ ଥିଲେ । †† କବି ତାହାର ଏକ ସୁନ୍ଦର ବର୍ଣ୍ଣନା ଏ ପୁସ୍ତକରେ

※ ମୂଳଥିଲେ ଡାଳ ତହୁଁ ପଲ୍ଲବଇ ସିନା
ମୂଳ ଗଲେ ଡାଳର ପ୍ରଳୟ ହୋଇଯେ କନା । (ପଦ-୪୩୦)

† ଚନ୍ଦନ ବୃକ୍ଷ ପ୍ରାୟେକ ମଣି ଆଶ୍ରେ କଲି
ନିଶ୍ଚୟେ ଶିମୁଳୀ ବୃକ୍ଷ ପରାୟେ ମଣିଲି ।
କାଠ ହେଲେ ପଲ୍ଲବନ୍ତା ପଥର ଝଡ଼ନ୍ତା,
ପଶୁ ହେଲେ ହସି ମୋତେ ଉତ୍ତର ଦିଅନ୍ତା । (ପଦ ୬୩୮-୩୯)

†† ଫୁଟିଲି ଚମ୍ପାର ପ୍ରାୟେ ଆମୋଦଇ ଦେହ,
ତେଣୁ କରି ମୋର ମନେ ବଢ଼ିଲା ସନ୍ଦେହ ।
ଅଧର ନାସିକା କର୍ଣ୍ଣ ବୁଝିଲି ସାମାନ୍ୟ,
ଦନ୍ତପନ୍ତି ବିରାଜଇ ମୁକୁତା ପ୍ରାୟେଣ ।
ରୁଚିର ଚକୁର କେଶ ଭୂମିରେ ଲୋଟଇ,
ବେନି ବାହୁଦଣ୍ଡ ତା'ର ଅଣ୍ଟୁରେ ପଡ଼ଇ ।
ବେନି ବାହୁଦଣ୍ଡ ଆଣ୍ଟୁ ତଳକୁ ଲମ୍ବଇ,
ଅଙ୍କୁଶ କୁଣ୍ଡଳ କରତଳେ ଶୋଭପାଇ ।
ଲଲାଟେ ତ୍ରିଶାଖା ଶିରେ ବିରାଜଇ ଯାର,
ପାଦତଳେ ପଦ୍ମଚକ୍ର ଦିଶୁଛି ଭୂମିର । (ପଦ ୫୮୩-୮୮)

କରିଛନ୍ତି । ତତୁଲ୍ୟ ଏକ ବର୍ଣ୍ଣନା ଦେଖିବାକୁ ମିଳେ, ଯେତେବେଳେ ରାଜା ଗୋବିନ୍ଦଚନ୍ଦ୍ର ନିଜ ରୂପରେ ନିଜେ ମୁଗ୍ଧ ହୋଇ ଭାବୁଛନ୍ତି । ଚମ୍ପାଫୁଲ ପରି ନିଜ ଦେହର କାନ୍ତି । ସୌନ୍ଦର୍ଯ୍ୟଭରା ଶରୀର, ଦେବତାଙ୍କ ସହିତ ସମାନ ହୋଇପାରନ୍ତି । ଯଶୋବନ୍ତଙ୍କ ରଚନା ଗୁଡ଼ିକ ମଧ୍ୟରୁ ଗୋବିନ୍ଦଚନ୍ଦ୍ରରେ କବିତ୍ୱର ନିଦର୍ଶନ ଅଧିକ ଦେଖିବାକୁ ମିଳେ ।

ଯୋଗୀନ୍ଦ୍ର ଦୈବଜ୍ଞ ବିପ୍ରଙ୍କ ରଚିତ "ଟୀକା ଗୋବିନ୍ଦଚନ୍ଦ୍ର" ବିଷୟବସ୍ତୁ ଦୃଷ୍ଟିରୁ ଯଶୋବନ୍ତଙ୍କ ରଚନା ସହିତ ପ୍ରାୟ ସମାନ । ମାତ୍ର ଏହାର ବର୍ଣ୍ଣନା ଅଧିକ ବାସ୍ତବମୁଖୀ । ଭକ୍ତ କବିର ପରିପ୍ରକାଶ ସହିତ ଗୋବିନ୍ଦଚନ୍ଦ୍ରଙ୍କ ସନ୍ଦିଗ୍ଧ ମନର ପରିଚୟ ମିଳେ । ମାତାଙ୍କ ମୁଖରୁ ଯୋଗୀ ହେବାର ଖବର ପାଇ ଗୋବିନ୍ଦଚନ୍ଦ୍ରଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ଓ ତାହା ପ୍ରଶ୍ନ ଆକାରରେ ପ୍ରକାଶିତ ହୋଇଛି । ସେ ସିଧାସଳଖ ମାତାଙ୍କୁ ପ୍ରଶ୍ନ କରିଛନ୍ତି, ଯେବେ ଯୋଗୀ କରିବାର ଇଚ୍ଛାଥିଲା ତେବେ ବାଲ୍ୟତ ସମୟରେ ନକଲେ କାହିଁକି ? ରାଜ୍ୟ, ରାଣୀ ଇତ୍ୟାଦି ତରୁଣ ବୟସର ପ୍ରଲୋଭନକୁ ଏଡ଼ାଇଯିବା ଯେତେବେଳେ ଦୁଃସାଧ୍ୟ ସେତିକି ବେଳେ ଗୃହତ୍ୟାଗୀ ହେବାକୁ ନିର୍ଦ୍ଦେଶ ଦେଲେ କାହିଁକି ? ତାଙ୍କର ଦ୍ୱିତୀୟ ପ୍ରଶ୍ନ ଥିଲା, ନିମଡ଼ୋଶ୍ୱା ରାଣୀ (ଯଶୋବନ୍ତଙ୍କ ମୁକ୍ତା ଦେଈ) ନିଜେ ଜଣେ ସାଧିକା ହୋଇ ଏବଂ ଯମ ଦଣ୍ଡରୁ ମୁକ୍ତି ପାଇବାର ତତ୍ତ୍ୱ ତାଙ୍କୁ ଜଣାଥିଲେ ମଧ୍ୟ ତାଙ୍କ ସ୍ୱାମୀଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରି ପାରିଲେ ନାହିଁ କାହିଁକି ? ପ୍ରଶ୍ନ ଦୁଇଟି ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଓ ଯୁକ୍ତିଯୁକ୍ତ । ପୁନଶ୍ଚ ଯୋଗୀନ୍ଦ୍ରଙ୍କ ଗୋବିନ୍ଦଚନ୍ଦ୍ର, ଯଶୋବନ୍ତଙ୍କ ବର୍ଣ୍ଣିତ ଗୋବିନ୍ଦଚନ୍ଦ୍ରଙ୍କ ପରି ମାତାଙ୍କର ପଦେ କଥାରେ ଯୋଗୀ ହେବାପାଇଁ ରାଜି ହୋଇ ଯାଇ ନାହାନ୍ତି । ମାତାଙ୍କୁ ଆକ୍ଷେପ କରିଛନ୍ତି । ଅଭିଯୋଗ ବାଢ଼ିଛନ୍ତି । ମାତା ହୋଇ ପୁତ୍ରର ସୁଖ ଯେ ନ ଦେଖେ ସେ ଚଣ୍ଡାଳୁଣୀ ଓ ଭଗାରି ବୋଲି କହିଛନ୍ତି । ‡ ନିମଡ଼ୋହ୍ନ ରାଣୀ ପୁତ୍ରର କଥାଶୁଣି ଯେଉଁ ଉତ୍ତର ଦେଇଛନ୍ତି, ତାହା ଜଣେ ସାଧାରଣ ମାତୃ ହୃଦୟର କଥା । ମା' ଆଗରେ ସନ୍ତାନ ମୃତ୍ୟୁର ବିଭୀଷିକାମୟ ଚିତ୍ର କଳ୍ପନା କରି ରାଣୀ କହିଛନ୍ତି

‡ ମାତା ରୂ ନୋହିଲୁ ଚଣ୍ଡାଳୁଣୀ ହେଲୁ, ହେଲୁ ମୋ ପିଣ୍ଡେ ଭଗାରି
ଚଲୁ ଲିଟାକାଟି ଦେଇ ଲେ ଜନନୀ, ଉପରେ ସିଞ୍ଚିଲୁ ପାଣି ।
(ଯୋଗୀନ୍ଦ୍ର ଦୈବଜ୍ଞ ବିପ୍ର-ଟୀକା ଗୋବିନ୍ଦଚନ୍ଦ୍ର-ପୃ ୨)

ଯେ ପୁଅ ଯୋଗୀ ହେଉ ପଛକେ ଜୀବନରେ ବଞ୍ଚିରହୁ । ‡‡ କାରଣ ଗୋବିନ୍ଦଚନ୍ଦ୍ର ଜନ୍ମର ଏକୋଇଶ ଦିନରେ ଜ୍ୟୋତିଷ ଗଣନା କରି କହିଥିଲେ ଯେ ଏକୋଇଶ ବର୍ଷ ବୟସରେ ପୁତ୍ରର ମରଣ ଶୃଷ୍ଟ ରହିଛି । ଏପରି ଘଟଣାର ଅବତାରଣାରେ କବିଙ୍କ ବାସ୍ତବାଭିମୁଖୀ ଦୃଷ୍ଟିକୋଣର ପରିଚୟ ମିଳେ । ଏପରି ଭବିଷ୍ୟତ ବାଣୀଶୁଣି ଜଣେ ସାଧାରଣ ଜନନୀର ହୃଦୟ ଉଦ୍‌ବେଳିତ ହେବା ସ୍ୱାଭାବିକ । ଜମଡ଼ୋଙ୍ଗ ରାଣୀ, ମୁକ୍ତା ଦେଇଙ୍କପରି ଦର୍ପଣରେ ମୁହଁ ଦେଖିବା ଘଟଣାରେ ପୁତ୍ରକୁ ଯୋଗୀ କରିବାର ଇଚ୍ଛା ପୋଷଣ କରିନାହାନ୍ତି । ଅପୁତ୍ରିକ ନାରୀ ପ୍ରତି ତତ୍କାଳୀନ ସମାଜର ଦୃଷ୍ଟିଭଙ୍ଗୀ ସୂଚିତ ହେବା ସହିତ ରାଣୀଙ୍କ ମନର କରୁଣ ଅବସ୍ଥାର ଚିତ୍ର ଉକ୍ତ ବର୍ଣ୍ଣନାରୁ ସୂଚିତ ହୁଏ । ଜମଡ଼ୋଙ୍ଗ ରାଣୀଙ୍କର ପୁତ୍ର ଜାତ ନହେବାରୁ ରାଜା, ଜମ ବନରେ ଏକ ଘର ତିଆରିକରି ସେଠାକୁ ରାଣୀଙ୍କୁ ପ୍ରେରଣ କରିଛନ୍ତି । ସେଠାରେ ସେ ଘୋଡ଼ାଶାଳ ପୋଛିବା କାର୍ଯ୍ୟରେ ନିଯୁକ୍ତହେଲେ । ରାଜା ତାଙ୍କୁ ସେରକ ଗ୍ୱଉଳ ଓ ବୋଡ଼ିଏ କଉଡ଼ି ଛଡ଼ା ଅନ୍ୟ କିଛି ଦେଉ ନ ଥିଲେ, ରାନ୍ଧିବା ପାଇଁ ଜାଳେଣି ଦେଉଥିଲେ କାନକୋଳି କଣ୍ଟା ଓ ବାଇଗଣ ଗଛର ଝିଙ୍କା । ହଳଦୀ ବଦଳରେ ବଣ ପିପ୍‌ପଳୀ, ଲୁଣ ନ ଦେଇ ଯବକ୍ଷାର ଓ ଏପରିକି ତେଲ ବଦଳରେ ଅଶ୍ରୁମୂତ୍ର ଦେଉଥିଲେ । ଏପରି କ୍ଷେତ୍ରରେ ପନିପରିବା କି ପ୍ରକାର ଦେଉଥିବେ ! ତୋଡ଼ି ମାଛର ଅଣ୍ଡା ଓ ବାଇଗଣ ବେଣ୍ଟ ରାଣୀଙ୍କୁ ଦେଉଥିଲେ ତରକାରୀ ରାନ୍ଧି ଖାଇବା ପାଇଁ ରାଣୀଙ୍କୁ ଏପରି ନିର୍ଯ୍ୟାତନା ଭୋଗିବାକୁ ହେଲା ପୁତ୍ର ଜାତ ନ କରିଥିବା ଅପରାଧ ପାଇଁ । ମାତ୍ର ରାଣୀ ଏ କଷ୍ଟକୁ ସବୁଦିନ ପାଇଁ ଆଦରି ନ ନେଇ ତାଙ୍କ ମାତା ମଉନା ଦେଇଙ୍କୁ ଖବର ଦେଇଛନ୍ତି ଓ ବାପାଙ୍କ ପାଖରୁ ଧନ ଆଣି ରାଜପ୍ରାସାଦ ତୁଲ୍ୟ ନଗର ତୋଳିଛନ୍ତି । ତାଙ୍କ କେଶ ତେଲ ବିନା ଆଉ ଜଟା ହୋଇନ କି ବସ୍ତ୍ର ଅଭାବରେ ବୃକ୍ଷ ବକଳ ପିନ୍ଧିବାକୁ ପଡ଼ିନ । ପୁତ୍ର ଲାଭପାଇଁ ମଧ୍ୟ ସେ ଅନେକ କଷ୍ଟ କରିଛନ୍ତି । ଦାନ, ଧର୍ମ, ତର୍ପଣ ଇତ୍ୟାଦି ଅନେକ ଔପଗ୍ରହିକ କର୍ମ କରି ଗୋବିନ୍ଦଚନ୍ଦ୍ରଙ୍କୁ ସେ ଲାଭ କରିଛନ୍ତି । ଟୀକା ଗୋବିନ୍ଦଚନ୍ଦ୍ର ଯଶୋବନ୍ତଙ୍କ ଗୋବିନ୍ଦଚନ୍ଦ୍ରର ପ୍ରଭାବରେ ରଚିତ ହୋଇଥିଲେ ମଧ୍ୟ କଥାବସ୍ତୁ ସଂଗ୍ରହରେ ବଙ୍ଗୀୟ କବି ଦୁର୍ଲଭ ମଲ୍ଲିକଙ୍କ ସହିତ ଯୋଗୀନ୍ଦ୍ରଙ୍କର ଅଧିକ ସାମ୍ୟ ଲକ୍ଷ୍ୟ କରାଯାଏ । ଏହାକୁ ନାଥ ସଂପ୍ରଦାୟର ଯୋଗୀମାନେ ଗୀତ ଆକାରରେ ବୋଲୁଥିବାର ଜଣାଯାଏ । କରୁଣରସର ଅବତାରଣା ଓ ସରଳ ପ୍ରକାଶଭଙ୍ଗୀ ଯୋଗୁ ଏହା ଜନସାଧାରଣଙ୍କ ମଧ୍ୟରେ ଖୁବ୍ ଆଦୃତ ହୋଇଥିବା ଅନୁମିତ ହୁଏ ।

ଯଶୋବନ୍ତଙ୍କ ରଚନା ଗୁଡ଼ିକର ସାହିତ୍ୟିକ ମୂଲ୍ୟାୟନବେଳେ ତାଙ୍କର ଅନ୍ୟାନ୍ୟ ରଚନା ପ୍ରତି ଦୃଷ୍ଟି ନିକ୍ଷେପ କରାଯାଇପାରେ । 'ଆତ୍ମପରଚେ ଗୀତାରେ' ଲେଖାଅଛି,

---

‡‡ କେ ଜାଣିବ ଦିନ ଦଶରେ କୁମର କେ ଜାଣିବ ଦିନ ବାର,
ମୁହଁ ମାତା ତୋର ନିରତେ ଜାଣିବ ମରିବାର ଯୁଗାନ୍ତର ।
(ଟୀକା ଗୋବିନ୍ଦଚନ୍ଦ୍ର-ପୃ ୧)

ଅନ୍ଧକୁ ଯଷ୍ଟି ସହାୟ ହେବାପରି ଶିଷ୍ୟକୁ ଗୁରୁ ସର୍ବଦା ସହାୟକ । ଗୁରୁବିନା ଶିଷ୍ୟ ଅଜ୍ଞାନର ଅନ୍ଧକାର ମଧ୍ୟରେ ପଡ଼ିରହେ । *

'ବଣଭୋଜି ବୋଲି' ଯଶୋବନ୍ତ ଦାସଙ୍କର ଅନ୍ୟ ଏକ ଅପ୍ରକାଶିତ ରଚନା । ଏଥିରେ ମଧ୍ୟ କବିଙ୍କର ଭକ୍ତିମତ୍ତା ବିଶେଷ ଭାବରେ ପ୍ରକଟିତ ହୋଇଛି । ମାତ୍ର କବିତ୍ୱ ଦୃଷ୍ଟିରୁ ଏହା ଏକ ସଫଳ ସୃଷ୍ଟି । ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ଏକ କାହାଣୀରୁ ଏହାର ବିଷୟବସ୍ତୁ ଆହରଣ କରାଯାଇଛି । 'ବଣଭୋଜି' ନାମରେ ଅଚ୍ୟୁତାନନ୍ଦଙ୍କର ମଧ୍ୟ ଏକ ରଚନା ଥିବା ଜଣାଯାଏ । ଏହାର ବିଷୟବସ୍ତୁ ହେଉଛି ଏହିପରି । ଥରେ ଗୋପୀମାନେ ବେଶଭୂଷା ହୋଇ ଦହି ବିକିବା ପାଇଁ ବୃନ୍ଦାବନକୁ ବାହାରିଲେ । ସେମାନେ କୃଷ୍ଣପ୍ରୀତିରେ ବିହ୍ୱଳ । ତେଣୁ ବେପାର ଯାହାହେଉ ପଛକେ ତୁଣ୍ଡରେ କୃଷ୍ଣନାମ ଉଚ୍ଚାରଣ କରି ଚାଲିଲେ । ସେମାନଙ୍କ ମଧ୍ୟରେ ଦଳଦଳ ହୋଇ ବିଭିନ୍ନ ସ୍ଥାନକୁ ଗଲେ ଦହିବିକିବା ପାଇଁ । କେତେଜଣ ଗଲେ ମଥୁରାର ବ୍ରାହ୍ମଣ ଶାସନକୁ । ବ୍ରାହ୍ମଣମାନେ ନିଜକୁ ବେଦଜ୍ଞ ମନେ କରନ୍ତି ଓ ଯଜ୍ଞକର୍ମାଦି ଉପରେ ଗୁରୁତ୍ୱ ଦିଅନ୍ତି । ଏଥିପାଇଁ ସେମାନଙ୍କ ମନରେ ବେଶ୍ ଅହଙ୍କାର ମଧ୍ୟ ଥାଏ । ବ୍ରାହ୍ମଣମାନଙ୍କର ଏହି ଅହଙ୍କାରର ପ୍ରଭାବ ବ୍ରାହ୍ମଣୀମାନଙ୍କ ଉପରେ ମଧ୍ୟ ପଡ଼ିଥାଏ । ଗୋପୀମାନଙ୍କର କୃଷ୍ଣଭାବାପନ୍ନ ଭଙ୍ଗୀ ଦେଖି ବ୍ରାହ୍ମଣୀମାନେ ତାଙ୍କୁ ତାଚ୍ଛଲ୍ୟ କରିଛନ୍ତି । କୃଷ୍ଣପ୍ରାଣ ଗୋପୀମାନେ ସେଥିରେ ସଙ୍କୁଚିତ ହେଲେ ନାହିଁ । ବରଂ ପ୍ରତିପାଦନ କରିବାକୁ ଚାହିଁଲେ ଯେ ସେମାନେ କୃଷ୍ଣସର୍ବସ୍ୱ । କୃଷ୍ଣପ୍ରୀତି ପାଖରେ ଘରସଂସାର, ସ୍ୱାମୀ, ଧନ ଦୌଲତ ସବୁ ତୁଚ୍ଛ । ଏହି ପ୍ରୀତି ଯୋଗୁଁ ସେ କୃଷ୍ଣଙ୍କୁ ଲାଭ କରିଛନ୍ତି । ପୁଣି କୃଷ୍ଣଙ୍କର ବାଲ୍ୟରୁ କରି ଆସିଥିବା ଅଲୌକିକ କାର୍ଯ୍ୟାବଳୀର ବର୍ଣ୍ଣନା କରିଛନ୍ତି । ଶେଷରେ ବ୍ରାହ୍ମଣୀମାନେ ଗୋପୀମାନଙ୍କର କୃଷ୍ଣଭକ୍ତି ଦେଖି ଅତୀବ ପ୍ରୀତ ହୋଇଛନ୍ତି, ଏବଂ ସେମାନଙ୍କୁ ପ୍ରଣତି ଜଣାଇ ଭଗବାନଙ୍କୁ ପାଇବାର ଉପାୟ ପ୍ରାର୍ଥନା

---

* ଜ୍ଞାନୀ ଦିବସ ଅଜ୍ଞାନ କି ରାତି
ଯେହ୍ନେ ଅନ୍ଧକୁ ଯଷ୍ଟିରେ ଚଳାନ୍ତି ।

ଗୁରୁ ନ ସେବିଲ ପ୍ରାଣୀ ଏମନ୍ତ
କାହିଁ ପାଇବେ ସେ ନିତ୍ୟର ଅର୍ଥ ।

ଅବିନା ମଧ୍ୟରେ ଅବିନା ପୀଠ
ଗୁରୁଙ୍କ ଭଣ୍ଡାର ଗୋଲକ ପେଣ୍ଠ

ଗତି ମୁକ୍ତି କ୍ଷମା ଦୟା ସାଗର
ଗୁପତେ ରହିଛି ଅଣ ଦୃଷ୍ଟିର । (ଆ:ପ: ଗୀତା)

କରିଛନ୍ତି ! ତାଙ୍କର ବଡ଼ପଣ ଆଉ ରହିଲା ନାହିଁ । * ମାତ୍ର ଗୋପୀମାନେ ତାଙ୍କ ପ୍ରେମଭକ୍ତିର କଥା କହିଛନ୍ତି । ହୃଦୟ ଭିତରେହିଁ ତାଙ୍କୁ ପାଇ ହୁଏ । ପାଇବାପାଇଁ କେଉଁଠିକୁ ଯିବାକୁ ପଡ଼େ ନାହିଁ । ବ୍ରାହ୍ମଣୀମାନେ ତାହା ହୃଦୟଙ୍ଗମ କରିଛନ୍ତି । ପୁଣି ଗୋପୀମାନଙ୍କର ଦହିବିକା ହୋଇ ନ ଥିବାରୁ ତାଙ୍କ ତାତ୍ସର୍ଯ୍ୟ କରିବା ପରିବର୍ତ୍ତେ ସମବେଦନା ଜ୍ଞାପନ କରିଛନ୍ତି । ସମସ୍ତେ ମିଶି ଧାନ ଗୁଣ୍ଡିଲ ଦେଇ ମଟୁକ ଦହି କିଣି ନେଇଛନ୍ତି । ପୁଣି ଗୋପୀମାନଙ୍କ ସହିତ ଯିବାକୁ ଇଚ୍ଛା ପ୍ରକାଶ କରିବାରୁ ବ୍ରାହ୍ମଣମାନେ ବାଧା ଦେଇଛନ୍ତି । ମାତ୍ର ବ୍ରାହ୍ମଣୀମାନଙ୍କର ମନ ଘର ବା ସ୍ୱାମୀଙ୍କ ପାଖରେ ବାନ୍ଧି ହୋଇ ରହିଲା ନାହିଁ । ସ୍ୱାମୀସେବା ରୂପକ କର୍ତ୍ତବ୍ୟରେ ସେମାନେ ହେଳା କଲେ ନାହିଁ । ମାତ୍ର ଅନ୍ତରରେ ଭଗବାନଙ୍କୁ ସଦାସର୍ବଦା ସ୍ମରଣ କରିବାକୁ ଲାଗିଲେ । ଭଗବାନ୍ ତାଙ୍କ ମନର ବ୍ୟାକୁଳତାକୁ ଜାଣିପାରି ତାଙ୍କ ପାଖରେ ଦେଖା ଦେବାକୁ ଇଚ୍ଛାକଲେ । ତେଣୁ ସେ କେତେକ ବତ୍ସା ଓ ଗୋପାଳ ବାଳକକୁ ସାଙ୍ଗରେ ନେଇ ବଣକୁ ଗଲେ । ବଣରେ ଖେଳୁ ଖେଳୁ ବାଳକମାନଙ୍କୁ ଭୋକ ଲାଗିବାରୁ କୃଷ୍ଣ, ପାଖରେ ଥିବା ବ୍ରାହ୍ମଣ ପଡ଼ାକୁ ପିଲାଙ୍କୁ ପଠାଇ ଦେଲେ କିଛି ଖାଇବା ପାଇଁ । ମାତ୍ର ବ୍ରାହ୍ମଣମାନେ ତାଙ୍କୁ ଭର୍ତ୍ସନା କଲେ ପିଲାମାନେ ସେଠାରୁ ଫେରି କୃଷ୍ଣଙ୍କୁ ଜଣାଇଲେ । କୃଷ୍ଣ ସେମାନଙ୍କୁ ଆଉ ଥରେ ପଠାଇଲେ ଏବଂ କହିଲେ ଗୃହର ପଛପଟେ ଯାଇଁ ବ୍ରାହ୍ମଣୀମାନଙ୍କୁ ମାଗିବ । ବ୍ରାହ୍ମଣୀମାନେ ଏଥରେ ଖୁସି ହୋଇ ନାନାଦି ସୁଖାଦ୍ୟ ଧରି ବଣକୁ ଆସିଲେ । ଶ୍ରୀକୃଷ୍ଣ ବ୍ରାହ୍ମଣୀଙ୍କ ହସ୍ତରୁ ଖାଦ୍ୟ ନେଇ ଗୋପ ବାଳକମାନଙ୍କ ସହ ମିଶି ଖାଇଲେ । ଖାଦ୍ୟ ପାଇ ସମସ୍ତେ ଖୁସି ହେଲେ । ବ୍ରାହ୍ମଣୀମାନେ ମଧ୍ୟ ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇ ଆନନ୍ଦିତ ହେଲେ ଓ ମୁକ୍ତି ଲାଭ କଲେ । ବ୍ରାହ୍ମଣମାନଙ୍କର ମଧ୍ୟ ପରିବର୍ତ୍ତନ ହେଲା ଓ ସେମାନେ ଅହଙ୍କାର ଦୂର କଲେ । ନାରଦ ବଟରେ ତରୁତଳେ ରହି ବଣ ଭୋଜିର ଦୃଶ୍ୟ ଉପଭୋଗ କରୁଥିଲେ । ସେ ମଧ୍ୟ ବୀଣା ବଜାଇ କୀର୍ତ୍ତନ କଲେ ଓ ବଣଭୋଜିରୁ ପ୍ରସାଦ ଖାଇଲେ । ସ୍ୱର୍ଗକୁ ଫେରିଲା ବେଳେ ସାଙ୍ଗରେ ନିର୍ମାଲ୍ୟ ନେଇଥିଲେ । ଶିବ ସେହି ନିର୍ମାଲ୍ୟକୁ ବାଟରେ ତାଙ୍କଠାରୁ ନେଇଗଲେ ।

ଏହି ଗାଥା କାବ୍ୟରୁ ଜଣାଯାଏ ଯେ ଆଧ୍ୟାତ୍ମିକ ଚେତନା ଜାଗରଣ ଏହାର ମୁଖ୍ୟ ଉଦ୍ଦେଶ୍ୟ । ତତ୍କାଳୀନ ଅନ୍ୟାନ୍ୟ ଭକ୍ତ ସାହିତ୍ୟ ପରି ଜଟିଳ ତତ୍ତ୍ୱରେ ଏହା ପୂର୍ଣ୍ଣ ନୁହେଁ । ସରଳ ପଦରଚନା ଓ କବିତ୍ୱର ପରିପ୍ରକାଶ ଯୋଗୁ ଏହା ଖୁବ୍ ସୁଖପାଠ୍ୟ ଓ ହୃଦୟଗ୍ରାହୀ ହୋଇପାରିଛି । ଦହି ବିକିବାକୁ ଯାଉଥିବା ଗୋପୀମାନେ ରାଣ୍ତରେ ଯେପରି

---

* ଗୋପୀଙ୍କ ପାଦେ ପ୍ରଣମିତ ହେଲେ
  ବଡ଼ପଣ ଗୁଡ଼ି ନଇଁ ପଡ଼ିଲେ । (ବଣଭୋଜି ବୋଲି—୬୭)

କୃଷ୍ଣନାମ ଉଚ୍ଚାରଣ କରୁଥିଲେ ତହିଁରୁ ତାଙ୍କର ଭକ୍ତମତ୍ତ୍ୱ ସୂଚିତ ହୁଏ । ମାତ୍ର ସହଜ ପ୍ରକାଶ ଭଙ୍ଗୀ ଓ ସରଳ ଶବ୍ଦ ସଂଯୋଜନା ହେତୁ ଅର୍ଥେ ଦୁର୍ବୋଧ ମନେ ହୁଏ ନାହିଁ † ମୁଣ୍ଡରେ ଦହି ବୋଝ । ତୁଣ୍ଡରେ କୃଷ୍ଣ ନାମ । ତେଣୁ ଦହି ବୋଝ ମୁଣ୍ଡକୁ କଷ୍ଟ ଦିଏନି । ବ୍ରାହ୍ମଣୀମାନଙ୍କର ବାତ୍ସଲ୍ୟ ଭକ୍ତି ମଧ୍ୟ ମନକୁ ବାଧେ ନାହିଁ । କାରଣ କୃଷ୍ଣ ଭାବରେ ସେମାନେ ମଗ୍ନ ରହୁଥିଲେ । †† କବି ବଣଭୋଜିର ଯେଉଁ ବାସ୍ତବ ଚିତ୍ର ଅଙ୍କନ କରିଛନ୍ତି ତହିଁରୁ ତାଙ୍କର ପର୍ଯ୍ୟବେକ୍ଷଣ ପାରଦର୍ଶିତା ସୂଚିତ ହୁଏ ଏବଂ ମନେହୁଏ କବିଙ୍କର ବ୍ୟକ୍ତିତ୍ୱ କୃଷ୍ଣଙ୍କର ଆଧ୍ୟାତ୍ମିକ ସତ୍ତା ସହିତ ଏକୀଭୂତ ହୋଇଯାଇଛି । ଅପର ପକ୍ଷରେ ଏ ଜଗତର ସାଧାରଣ ଶିଶୁମାନଙ୍କର କ୍ରୀଡ଼ା କୌତୁକର ଚିତ୍ର ମଧ୍ୟ ଅଙ୍କିତ ହୋଇଛି ।

'ଆତ୍ମ ପରଚେ ଗୀତା' ଯଶୋବନ୍ତ ଦାସଙ୍କର ଅନ୍ୟଏକ ରଚନା । ଏଥିରେ ଶ୍ରୀ ଜଗନ୍ନାଥଙ୍କର ଅଲୌକିକ ବର୍ଣ୍ଣନା ସ୍ଥାନ ପାଇଥିଲେ ମଧ୍ୟ ଏହାର ଭାଷା ଓ ପ୍ରକାଶ ଭଙ୍ଗୀର ସାରଲ୍ୟ ଯୋଗୁ ସୁବୋଧ ହୋଇ ପାରିଛି । ଏଥିରେ ଅନେକ ସ୍ଥଳରେ ଅଳଙ୍କାର ପ୍ରୟୋଗ ହେତୁ ଏହାର ସାହିତ୍ୟିକ ମର୍ଯ୍ୟାଦା ବୃଦ୍ଧି ପାଇଥିବା ଲକ୍ଷ୍ୟ କରାଯାଏ । ††† ନିତ୍ୟ ସ୍ଥଳର କର୍ତ୍ତାଙ୍କ ରୂପ ବର୍ଣ୍ଣନା କରିବା ପ୍ରସଙ୍ଗରେ କବି ଯେଉଁ

---

† ମୂର୍ଖ ଚଣ୍ଡାଳ ବିପ୍ର ଅବିବେକ
ହରିଚରିତ କହେ ଯେଉଁ ଲୋକ ।
ପରାକୃତ ବୋଲି ନ ବିଚାରିଲେ
ସମସ୍ତେ ଶୁଣିଲେ ତୁଣ୍ଡେ ଧରିଲେ ।
ମୁକୁତା ଯେହ୍ନେ ଶାମୁକାରେ ଥାଇ ।
ସାମୁକା ଦୋଷକି ତାକୁ ଲାଗଇ । (ପଦ-୨୩୯—୪୩)

†† କେବଳ ଆମ୍ଭଙ୍କୁ ତାରିବା ପାଇଁ ଗୋପେ ଜନମ ହୋଇଲେ ଗୋସାଇଁ
ଦୀନ ଜନଙ୍କର ତାପ ହରିବେ, ପୃଥ୍ୱୀର ଭାର ବିନାଶ କରିବେ ।
ସଂପୂର୍ଣ୍ଣାନନ୍ଦ ସହଜ ମୂରତି, ଗୋପରେ ଦେହ ଧରି ଉତପତି ।
ଆମ୍ଭେମାନେ ତାଙ୍କୁ ଦେଖିଲୁ ତୋଳେ ତାହାଙ୍କ ଭାବେ ବୁଡ଼ିଲୁ ଅଟଳେ
(ପଦ ୩୭—୩୯)

††† ନିତ୍ୟରେ ଯେହ୍ନ କରତା ଅଛଇ, କେମନ୍ତ ବର୍ଣ୍ଣି ସେ ରୂପ ବହଇ ।
ଛୁଇ ନ ପଡ଼ଇ ଅଙ୍ଗ ଯାହାର, କେମନ୍ତ ହୋଇ ସେ ରୂପ ତାହାର ।
ଆହାର ନ ଖାଇ ଶୂନ୍ୟେ ବିହରି କେମନ୍ତେ ସେ ଦେହ ଅଛଇ ଧରି
ଅଗ୍ନି ନୁହ ସେ ଜଳୁଛି କାହିଁ, ଜଳ ନୁହଇ ସେ କେମନ୍ତ ବହି ।
(ପଦ ୪୪-୪୭)

ବେଦୋକ୍ତି ଅଳଙ୍କାରର ସଂଯୋଗ କରିଛନ୍ତି ତାହାଦ୍ୱାରା ଜଟିଳ ତତ୍ତ୍ୱ ଗୁଡ଼ିକ ବୋଧଗମ୍ୟ ହୋଇପାରିଛି । ଏଥିପାଇଁ କେତେକ ଉପମା ପ୍ରୟୋଗ ହୋଇଥିବା ଲକ୍ଷ୍ୟ କରାଯାଏ । ନାମବ୍ରହ୍ମ ବିଷୟ ବୁଝାଇବାବେଳେ ପ୍ରସଙ୍ଗଟିକୁ ସହଜ କରିବା ଉଦ୍ଦେଶ୍ୟରେ କେତେକ ଉପମାକୁ ସ୍ଥାନ ଦେଇଛନ୍ତି । ଅବଶ୍ୟ କବି କେତେକ ଉପମାକୁ ଏକାଧିକ ସ୍ଥଳରେ ପ୍ରୟୋଗ କରିଛନ୍ତି । ତଥାପି ତତ୍ତ୍ୱଗୁଡ଼ିକୁ ସହଜବୋଧ କରିବାରେ ଏଗୁଡ଼ିକ ସହାୟକ ହୋଇଛନ୍ତି । † ଯଶୋବନ୍ତଙ୍କ ରଚିତ ଗୋବିନ୍ଦଚନ୍ଦ୍ର ଓ ଚିଣଡ଼ିଆଜାଲ ବୋଲି ଗାଥାକାବ୍ୟ ଦୁଇଟି ବ୍ୟତୀତ ଅନ୍ୟ ରଚନାଗୁଡ଼ିକ ଧର୍ମଦର୍ଶନ ଓ ତତ୍ତ୍ୱରେ ପରିପୂର୍ଣ୍ଣ । ତଥାପି କବି ଏହାକୁ ସୁବୋଧ କରିବାପାଇଁ ପ୍ରୟାସ କରିଛନ୍ତି । ଅଥଚ କବିଙ୍କର ସଂସ୍କୃତ ଭାଷାପ୍ରତି ଅନୁରକ୍ତି ଥିଲା, ଦକ୍ଷତା ମଧ୍ୟ ଥିଲା । 'ଶିବ ହୃଦ୍‌ବୋଧସ୍ତ' ରଚନାଟି ତାହାର ଏକ ଦୃଷ୍ଟାନ୍ତ । ସଂସ୍କୃତ ଗ୍ରନ୍ଥର ଅବଲମ୍ବନରେ ଏହା ରଚିତ । କବି କାବ୍ୟ ରଚନା ବେଳେ ବହୁ ସ୍ଥଳରେ ସଫଳ ଅନୁବାଦ କରିଥିବା ଲକ୍ଷ୍ୟ କରାଯାଏ । ସ୍ୱର ଶାସ୍ତ୍ରର ଉପଯୋଗିତା ଦର୍ଶାଇବାକୁ ଯାଇଁ କବି କେତେକ ଉପମା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ଯେ ଶିରସ୍ଥାନ ଶରୀର, ଶାସ୍ତ୍ରସ୍ଥାନ କଥା, ନାଥସ୍ଥାନ ବୃକ୍ଷ ତୁଲ୍ୟ ସ୍ୱରସ୍ଥାନ ଜ୍ୟୋତିଷ ଶାସ୍ତ୍ର ଅସୁନ୍ଦର । ସଂସ୍କୃତ ଗ୍ରନ୍ଥର ଗୋଟିଏ ପଦ ସହିତ ଏହାକୁ ତୁଳନାକଲେ ଉଭୟରେ ଥିବା ସାମ୍ୟ ଲକ୍ଷ୍ୟ କରାଯାଏ । ଏଥିରୁ କବିଙ୍କ ସଂସ୍କୃତ ଜ୍ଞାନର ପରିଚୟ ମିଳେ । ❋

**ବର୍ଣ୍ଣନା ଭଙ୍ଗୀ** :—ଯଶୋବନ୍ତଙ୍କ କେତେକ ରଚନାରେ ବର୍ଣ୍ଣନା ପାଟବର ନିଦର୍ଶନ ମିଳେ । କବି ବିଶେଷ ଭାବରେ ଚରିତ୍ରମାନଙ୍କର ରୂପବର୍ଣ୍ଣନାରେ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ଗୋବିନ୍ଦଚନ୍ଦ୍ର ରମ୍ଭା ଗୃହରେ ଅବସ୍ଥାନ କରୁଥିବା ବେଳେ ରମ୍ଭା, ଗୋବିନ୍ଦଚନ୍ଦ୍ରଙ୍କ ରୂପ ମାଧୁରୀ ଦର୍ଶନ କରି ବିମୁଗ୍ଧ ହୋଇଛି । କବି ରମ୍ଭା ମୁଖରେ

---

† ଶାମୁକାରେ ଯେହ୍ନେ ମୁକୁତା ଥାଇଁ, ଶାମୁକା ଦୋଷ କି ତାକୁ ଲାଗଇ ।
ମୃଷା ବିମ୍ବରେ ଶ୍ୱେତ ନାଗ ଥାଇ, ଅମଳିତ ହୋଇ ବାହାର ହୋଇଂ ।
ଅଶୁଦ୍ଧ ସ୍ଥାନରେ ଅଗ୍ନି ପଡ଼ିଥାଇ, ତାହାକୁ କେଉଁ କଳଙ୍କ ଲାଗଇ ।
(ପଦ-୪୫—୪୭)

❋ ସ୍ୱରସ୍ଥାନ ହେଲେ ଜ୍ୟୋତିଷ ଶୋଭା ନୁହେଁ
ନାଥସ୍ଥାନ ବୃକ୍ଷ ଯେହ୍ନେ ଅଶୋଭାକୁ ପାଏ ।
ଶାସ୍ତ୍ରସ୍ଥାନ ହେଲେ କହିବାକୁ ଅସୁନ୍ଦର
ଶିରସ୍ଥାନ ହେଲେ ଯଥା ଅଶୋଭା ଶରୀର । (ଶିବ ହୃଦ୍‌ବୋଧସ୍ତ-ପ ୩୭-୩୮)
ତୁଳନୀୟ-ସ୍ୱରହୀନୋଥ ଦେବଜ୍ଞୋ-ନାଥହୀନ ଯଥା ଗୃହଂ
ଶାସ୍ତ୍ରହୀନ ଯଥା ବକ୍ତା-ଶିରୋହୀନଂ ଚ ଯଦ୍‌ବପୁଃ
(ସ୍ୱରୋଦୟ ଲେଖ-୧ମ ଅଧ୍ୟାୟ-୧୭ପଦ)

ଗୋବିନ୍ଦଚନ୍ଦ୍ରଙ୍କ ରୂପ ବର୍ଣ୍ଣନା କରିଛନ୍ତି । ଫୁଟିଲା ଚମ୍ପା ପରି ଦେହର କାନ୍ତି, ଦନ୍ତପନ୍ତି ମୁକୁତା ପରି, ବାହୁ ସୁଦୀର୍ଘ, ସୁନ୍ଦର କେଶ, ଲଲାଟରେ ଝିଶାଖା ଶିର ସୌନ୍ଦର୍ଯ୍ୟ ବୃଦ୍ଧିରେ ସହାୟକ ହୋଇଛି * କିନ୍ତୁ କବି କୌଣସି ସ୍ଥଳରେ ରୀତିଯୁଗୀୟ କବିଙ୍କ ପରି ବର୍ଣ୍ଣନାର ଆଧିକ୍ୟରେ କାବ୍ୟକୁ ଭାରାକ୍ରାନ୍ତ କରି ନାହାନ୍ତି । 'ବଣଭୋଜି ବୋଲିରେ' ଗୋପୀମାନଙ୍କର ରୂପ ବର୍ଣ୍ଣନାରେ ମଧ୍ୟ କବିତ୍ୱ ଫୁଟି ଉଠିଛି । ଗୋପୀମାନେ ବେଶଭୂଷା ହୋଇ ବାହାରିଛନ୍ତି ଦହି ବିକିବା ପାଇଁ । ଦେହରେ ଓଡ଼ିଆଣୀର ଅଳଙ୍କାର, ହାର, ମୁଦି, କାପ, ବାହୁଟି ଓ ନୂପୁର ଖଞ୍ଜି ହୋଇ ଅତି ଚମତ୍କାର ଦେଖା ଯାଉଛନ୍ତି । ଏହି ବାସ୍ତବ ଛବିଟି ମଧ୍ୟ ବେଶ୍ ହୃଦୟଗ୍ରାହୀ ହୋଇ ପାରିଛି । ** ଗୋପୀମାନେ ଦହି ବିକିବାକୁ ଯାଉଛନ୍ତି । ମୁଣ୍ଡରେ ଦହି ବୋଝ ଧରି କୃଷ୍ଣଙ୍କର ନାମ ଉଚ୍ଚାରଣ କରି ଆନନ୍ଦରେ ଚାଲିବାକୁ ଲାଗିଛନ୍ତି । ଗୋପୀମାନେ କୃଷ୍ଣ ଭାବରେ କିପରି ମଜ୍ଜି ରହିଛନ୍ତି, ତାହାର ବାସ୍ତବ ବର୍ଣ୍ଣନା ଏଥିରେ ରହିଛି । † ଗୋପାଳ ବାଳକମାନଙ୍କ ସହିତ କୃଷ୍ଣ ଯେତେବେଳେ ବ୍ରାହ୍ମଣୀମାନଙ୍କଠାରୁ ଆଣିଥିବା ଖାଦ୍ୟ ଖାଉଛନ୍ତି ସେତେବେଳେ ସେମାନେ ହସ ଖୁସିରେ ନାଚ ନାଚି ଉପଭୋଗ କରୁଛନ୍ତି । ତାହାର ସ୍ୱଭାବ ସୁନ୍ଦର ବର୍ଣ୍ଣନା ଏଥିରେ ସ୍ଥାନ ପାଇଛି । ଉପରକୁ କଦଳୀ ଫୋପାଡ଼ି ଦେଇ ପାଟି ଦେଖାଇ

---

* ଫୁଟିଲ ଚମ୍ପାର ପ୍ରାୟେ ଆମୋଦଇ ଦେହ
ତେଣୁକରି ମୋର ମନେ ବଢ଼ିଲା ସେନେହ ।
ଅଧର ନାସିକା କର୍ଣ୍ଣ ରୂଚିଲ ସାମାନ୍ୟ
ଦନ୍ତପନ୍ତି ବିରାଜଇ ମୁକୁତା ପ୍ରାୟେଣ ।
ଚୂଟିର ଚିକୁର କେଶ ଭୂମିରେ ଲୋଟଇ
ବେନି ବାହୁଦଣ୍ଡ ତା'ର ଆଣ୍ଠୁରେ ପଡ଼ଇ । (ପଦ ୫୮୪-୮୬)

** ବେଣି ସାଜୋଇ କୁସୁମନ୍ତ ନାଇ, କପାଳେ ସିନ୍ଦୂର ଚିତା ଲଗାଇ ।
କର୍ଣ୍ଣ ରତ୍ନକାପ ଗଳାରେ ହାର, କ୍ଷୁଦ୍ର ମୁକୁତା ଶୋହେ ଚଉସର ।
ବାହେ ବାହୁଟି ବିଦ'ମୁଦି ଶୋହେ, ଗୋପ ଯୁବତୀ ଜଗୁଜନ ମୋହେ ।
ଚଳନ୍ତେ ନୂପୁର ବାଜେଣି ବାଜେ, ଯେସନେ ସର୍ଗ ଅପସରୀ ସାଜେ ।
(ବଣଭୋଜି ବୋଲି - ପଦ ୪-୭)

† ଦଧି ବୋଲି ଫୁରେ ଗୋବିନ୍ଦ ନାମ, କେହିଁ ଗୋପୀ ବୋଲେ ପୁରୁଷୋତ୍ତମ
କେ ବୋଲେ ମୁକୁନ୍ଦ ମାଧବ ହରି, ହେ ବୋଲେ ଉଦ୍ଧବ ହେ ଦଇତାରି ।
କେ ବୋଲେ ଶ୍ରୀ କୃଷ୍ଣ ହେ ଦାମୋଦର, କେ ବୋଲେ ଅନନ୍ତ ଦୟାସାଗର ।
(ପଦ ୨୩-୨୫)

ପୁଣି ତାଙ୍କୁ ଠୁଣ୍ଡରେ ଧନ ଖାଇବାର ବର୍ଣ୍ଣନା ଯେପରି ରହିଛି ତାହା ବାଲ୍ୟ ଚପଳତା ସହିତ ଉପଭୋଗ କରିବାର ଚିତ୍ର ପ୍ରକାଶିତ ହୁଏ । *

ସେହିପରି ଗୋବିନ୍ଦଚନ୍ଦ୍ର କାବ୍ୟରେ ଯଶୋବନ୍ତ ଚରିତମାନଙ୍କ ରୂପବର୍ଣ୍ଣନା ବ୍ୟତୀତ ଅନ୍ୟାନ୍ୟ କେତେକ ବର୍ଣ୍ଣନାକୁ ସ୍ଥାନ ଦେଇଛନ୍ତି । କାବ୍ୟର ପରିସମାପ୍ତିରେ ଗୋବିନ୍ଦଚନ୍ଦ୍ର ଶୂନ୍ୟ ମାର୍ଗରେ ଗମନ କରୁଥିବା ବେଳେ ଗୋରେଖ ନାଥ ଓ ତନ୍ତ୍ରୀପାଙ୍କୁ ଭେଟିଛନ୍ତି । ସେହି ସମୟରେ ସେମାନଙ୍କ ମଧ୍ୟରେ ଚାଲିଥିବା ଶକ୍ତିର ପ୍ରତିଯୋଗିତା ଗୋବିନ୍ଦଚନ୍ଦ୍ର ଦେଖିବାକୁ ପାଇଛନ୍ତି । ଦୀର୍ଘ ସମୟ ଧରି ଚାଲିଥିବା ଏହି ଶକ୍ତି କ୍ରୀଡାର ବର୍ଣ୍ଣନା କବି ଖୁବ୍ ସୁନ୍ଦର ଭାବରେ ଉପସ୍ଥାପନା କରିଛନ୍ତି । ଏପରି ଅଲୌକିକ ଘଟଣା ବିଶ୍ୱାସ ଯୋଗ୍ୟ ହୋଇ ନ ପାରେ । ଆଧୁନିକ ଜଗତବାସୀଙ୍କୁ କପୋଳ କଳ୍ପିତ ମନେ ହୋଇପାରେ । ମାତ୍ର ତା'ର ସତ୍ୟାସତ୍ୟକୁ ବାଦ୍ ଦେଇ କେବଳ ବର୍ଣ୍ଣନା ବିନ୍ୟାସ ପ୍ରତି ଦୃଷ୍ଟିପାତ କଲେ କବିଙ୍କର ପାରଦର୍ଶିତା ଲକ୍ଷ୍ୟ କରାଯାଏ । ବର୍ଣ୍ଣନାଟି ଏହିପରି— ଗୋବିନ୍ଦଚନ୍ଦ୍ର ଶୂନ୍ୟ ପଥରେ ଯାଉଥିବା ବେଳେ ଦେଖିଲେ ତନ୍ତ୍ରୀପା ମଧ୍ୟ ଶୂନ୍ୟରେ ଆବର୍ତ୍ତିତ ହୋଇଛନ୍ତି । ଶୂନ୍ୟରେ ତନ୍ତ ସାହାଯ୍ୟରେ କ୍ଷିପ୍ର ବେଗରେ ଲୁଗା ବୁଣୁଛନ୍ତି । ସେହି ସମୟରେ ଗୋରେଖ ନାଥ ମଧ୍ୟ ସେହି ବାଟରେ ଯାଉଥିଲେ । ଉଭୟଙ୍କର ଭେଟ ହେଲା । ଗୋରେଖନାଥ, ଲୁଗା ଛିଣ୍ଡି ଯାଉ ବୋଲି ଯେମିତି ଆଜ୍ଞା ଦେଲେ ତତ୍‌କ୍ଷଣାତ୍ ଲୁଗା ତନ୍ତରୁ ଛିଣ୍ଡିଗଲା । ତନ୍ତ୍ରୀପା ଏହା ଦେଖି ଦୁଃଖିତ ହେଲେ ଓ ପୁନର୍ବାର ସେ ଆଜ୍ଞା ଦେବାରୁ ତାହା ତନ୍ତରେ ଯୋଡ଼ି ହୋଇଗଲା । ଗୋରେଖ ପୁଣି ଏପରି ଅଜ୍ଞା ଦେଲେ ଯେ ଲୁଗା ସହିତ ତନ୍ତ ମଧ୍ୟ ଦୁଇଖଣ୍ଡ ହୋଇଗଲା । ତନ୍ତ୍ରୀପା ଆଉ ଥରେ ଆଜ୍ଞା ଦେଲେ ମଧ୍ୟ ତନ୍ତ ଯୋଡ଼ି ହେଲାନାହିଁ । ଦୁଇଜଣଙ୍କ ମଧ୍ୟରେ କିଏ ଅଧିକ ଶକ୍ତିମାନ୍ ସେଥିପାଇଁ ଉତ୍ତବାଦ ଓ କଳି ଆରମ୍ଭ ହେଲା ଏବଂ ଗୋରେଖ ନାଥ ତନ୍ତ୍ରୀପାଙ୍କୁ କହିଲେ, ତୁ ସହିତ ଆରମ୍ଭ କରୁଛୁ । ଶୂନ୍ୟପଥରୁ ତତେ ପୁଣି ହଟେଇ ଦେବି । ତନ୍ତ୍ରୀପା ମଧ୍ୟ ଡରୁଆ ନୁହନ୍ତି । ସେ ମଧ୍ୟ ଆତ୍ମବଡ଼ିମାରେ କହିଲେ—ମୁଁ ଚାରି ଯୁଗ-ଯାଏଁ ଅକ୍ରାମର । ଦେବତାମାନଙ୍କୁ ମୁଁ ଚରଣରେ ସ୍ଥାନ ଦିଏ । ଚଉଷଠି ସିଦ୍ଧମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ । ମୋର ଯେତେବେଳେ ଯେପରି ମନେ ହୁଏ ସେହିପରି ରୂପ ମୁଁ ଗ୍ରହଣ କରେ । ଗୋରେଖ ନାଥ କହିଲେ, କିପରି ମତେ ଅତିକ୍ରାନ୍ତ କରିପାରିବୁ ଦେଖିବା । ଏହା କହିବା ମାତ୍ରେ ତନ୍ତ୍ରୀପା ଶୂନ୍ୟରୁ ଖସି ପଡ଼ିଲେ, କିନ୍ତୁ ତନ୍ତ୍ରୀପା ଗୋରେଖଙ୍କୁ କହିଲେ ପଶ୍ଚାତ୍‌ଭାଗକୁ ଦୃଷ୍ଟି ନିକ୍ଷେପ କରିବାକୁ । ଗୋରେଖ ପଛକୁ ବୁଲି ଦେଖିଲେ ତନ୍ତ୍ରୀପା ଆମ୍ବଗଛରେ ଆମ୍ବ ଫଳଟିଏ ହୋଇ ଝୁଲୁଛନ୍ତି । ତେଣୁ ସେ ଆମ୍ବଗଛ ପାଖକୁ

* ଗୋପାଳେ ବୋଇଲେ ହେବ ମୁକତ, ନାଚନ୍ତ ବୁଲନ୍ତ ଗାବନ୍ତ ଗୀତ,
ତାଙ୍କୁ କଦଳୀ ଫୋପଡ଼ାଇ ଦେଇ, ଠୁଣ୍ଡ ପାତନ୍ତ ଉର୍ଦ୍ଧ୍ୱମୁଖ ହୋଇ,
(ପଦ ୧୯୬-୧୭)

ଯାଇଁ ଫଳଟିକୁ ଛୁଣ୍ଡାଇ ଗର୍ଭକୁ କ୍ଷେପଣ କରିବାପାଇଁ ଇଚ୍ଛା କରନ୍ତେ, ତନ୍ତ୍ରୀପା ଲଜ୍ଜିତ ହୋଇ ପକ୍ଷୀ ରୂପ ଗ୍ରହଣ କଲେ । ତନ୍ତ୍ରୀପା ଚଢ଼େଇ ହେବାରୁ ଗୋରେଖ ନାଥ ଚଢ଼େଇଆ ହେଲେ । ପୁଣି ତନ୍ତ୍ରୀପା ଜଳରେ ମୀନଟିଏ ହେବାରୁ ଗୋରେଖ ତାଙ୍କୁ ଜାଲରେ ଧରି ନେଇ ପୁନଶ୍ଚ ଜଳକୁ ନିକ୍ଷେପ କଲେ । ଏହାପରେ ତନ୍ତ୍ରୀପା ମେଘ ହୋଇ ଆକାଶରେ ଆଚ୍ଛାଦିତ ହୋଇଗଲେ । ମେଘ ଏପରି ମାଡ଼ିଗଲା ଯେ ପୃଥିବୀ ଅନ୍ଧକାର ହୋଇଗଲା । ଗୋରେଖ ପୁନଶ୍ଚ ତନ୍ତ୍ରୀପାଙ୍କୁ ପବନଦ୍ୱାରା ଉଡ଼ାଇ ଦେଲେ । ମେଘକୁ ଉଡ଼ାଇ ଦେବା ଦ୍ୱାରା ତନ୍ତ୍ରୀପା ଶ୍ରମ ପାଇ କୁହୁଡ଼ି ହୋଇ ବର୍ଷିଲେ । ତନ୍ତ୍ରୀପା ଗୁପ୍ତରେ ଜଳରେ ଗୋଟିଏ ଗେଣ୍ଡା ହୋଇ ଗର୍ତ୍ତ ଭିତରେ ରହିଗଲେ । ସାଧକ ଗୋରେଖ ଏହା ଲକ୍ଷ୍ୟ କରିପାରି ଗାତୁଆ ହୋଇ ଗେଣ୍ଡାକୁ ଖୋଳି ବାହାର କରି ଦେବା ପାଇଁ ପ୍ରଯତ୍ନ କଲେ । ଏହା ଦେଖିପାରି ତନ୍ତ୍ରୀପା ଗାତରୁ ବାହାର ହେଲେ । ଗୋରେଖ ତାଙ୍କୁ ଦେଖି ପଚାରିଲେ ଆଉ କି ରୂପ ହେବୁ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଯେଉଁଠି ରହିଲେ ବି ଗୋରେଖ ତାଙ୍କୁ ଧରିଆଣି ପାରିବେ ବୋଲି କହିଲେ । ଏହି ଅବସରରେ ସେ ତନ୍ତ୍ରୀପାଙ୍କୁ ପଚାରିଛନ୍ତି, ଗୋରେଖ ମଧ୍ୟ ସେହିପରି ଭିନ୍ନ ରୂପ ଗ୍ରହଣ କରିବେ । ତନ୍ତ୍ରୀପା, ଗୋରେଖଙ୍କୁ ଠାବକରି ଧରି ପାରିବେ କି ? ତନ୍ତ୍ରୀପା କହିଲେ ତାଙ୍କ ଇଚ୍ଛାନୁସାରେ ସେ ଯେକୌଣସି ରୂପ ଗ୍ରହଣ କରିପାରନ୍ତି । ଏଥର ଗୋରେଖଙ୍କର ପାଳି । ଗୋରେଖ କିନ୍ତୁ ଖୁବ୍ ସ୍ୱଳ୍ପକରେ କାର୍ଯ୍ୟକଲେ । ଗେଣ୍ଡା, ମାଛ ଇତ୍ୟାଦି ନ ହୋଇ ଜଳ ହୋଇଗଲେ ଓ ଜଳ ସହିତ ମିଶିଗଲେ । ତନ୍ତ୍ରୀପା ପାଣିରେ ଝିଅ ପକାଇ ଗୋରେଖଙ୍କୁ ଖୋଜିଲେ । ମାତ୍ର ଜଳ ସହିତ ଜଳ ହୋଇ ଏକାକାର ହୋଇଯାଇଥିଲେ । ତେଣୁ ଖୋଜି ବାହାର କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ତେଣୁ ସେ ଖୁବ୍ ମନ ଦୁଃଖ କଲେ । ଗୋରେଖ କି ରୂପ ଗ୍ରହଣକଲା ଯେ ସେ ଜାଣି ପାରିଲେ ନାହିଁ । ବିରସ ମନରେ ଏପରି ଚିନ୍ତା କରୁ କରୁ ଗୋରେଖନାଥ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ତନ୍ତ୍ରୀପାଙ୍କୁ କହିଲେ—ରୁ ଭ ମହାତପା, ତତେ କିଏ ଅବା ସାନ କରିଦେଇ ପାରିବ ? ତେବେ ତୋ ମନରେ ଦୁଃଖ କାହିଁକି ? ଏହା ଗୋରେଖ ନାଥଙ୍କର ନିଜସ୍ୱ ଆତ୍ମଶ୍ଲାଘା, ଯଦିଓ ବାହ୍ୟତଃ ସ୍ୱନସ୍ତୋତ୍ର ପରି ମନେ ହେଉଛି । ସେତେବେଳକୁ ତନ୍ତ୍ରୀପା ପରାଜୟର ବେଦନାରେ ଦଗ୍ଧୀଭୂତ । ତେଣୁ ଗୋରେଖଙ୍କୁ ଶ୍ରେଷ୍ଠର ସ୍ୱୀକୃତି ନ ଦେଇ ଅନ୍ୟ ଗତି ନ ଥିଲା । ତେଣୁ ସେ କହିଲେ, ମତ୍ସ୍ୟେନ୍ଦ୍ରଙ୍କର ତମେ ନାତି, ସୁସିଦ୍ଧମାନଙ୍କ ମଧ୍ୟରେ ତମର ସ୍ଥାନ ଆଗରେ । ଗୋରେଖଙ୍କ ସାନିଧ୍ୟ ଲାଭ କରି ତନ୍ତ୍ରୀପା କୃତାର୍ଥ ହେଲେ । * ଉଭୟେ ମିଶି ସ୍ୱର୍ଗପୁରକୁ

* ତନ୍ତ୍ରୀପା ବୋଇଲେ ତୁମ୍ଭେ ସୁସିଦ୍ଧ ଗୋସେଇଁ,
ସିଦ୍ଧଗଣ ସଙ୍ଗେ ତୁମ୍ଭେ ଅଗ ଲେଖା ହୋଇ ।
ଆମ୍ଭମାନେ ନାତି ତୁମ୍ଭେ ମହାଯତି ଭଣି,
ତୁମ୍ଭଙ୍କୁ ଭେଟିଣ ମୁଁ ଯେ ପାଇଲି କାରେଣୀ । (ପଦ ୧୦୨୦, ୧୦୨୨)

ଗଲେ । ଶତ୍ରୁ ପକ୍ଷୀଙ୍କର ଯେଉଁ ଲୁଚକାଳି ଖେଳ ଲାଗିଥିଲା, ତାହାର ଅବସାନ ଏଇଠି ଘଟିଲା । ବର୍ଣ୍ଣନାଟି ପଢ଼ିଲେ କବିଙ୍କର ବ୍ୟଙ୍ଗାତ୍ମକ ପଟୁତା ପରିଲକ୍ଷିତ ହୁଏ ।

ଗୋବିନ୍ଦଚନ୍ଦ୍ର ଯୋଗୀ ହୋଇଯିବାର ବର୍ଣ୍ଣନାରେ ମଧ୍ୟ ହୃଦୟ ସୁନ୍ଦର ଚିତ୍ର ଦେଖିବାକୁ ମିଳେ । ତେଣୁ ପାଠକ ମନରେ ସମ୍ବେଦନା ସୃଷ୍ଟି ହୁଏ । ଗୁରୁ ଆଜ୍ଞା ଦେଲେ ଯୋଗୀ ହେବା ପାଇଁ । ଗୋବିନ୍ଦଚନ୍ଦ୍ର ଚିନ୍ତା କଲେ, ରାଜାର କୁମର କେମିତି ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗିବେ ? ଗୁରୁଙ୍କର ଆଜ୍ଞା ତ ଅବଜ୍ଞା କରିହେବନାହିଁ । ତେଣୁ ଦେହରେ ମେଖଳା ପରିଧାନ କଲେ, ବାମ କାନ୍ଧରେ ଲମ୍ବିଥାଳ ଝୁଲାଇଲେ । ହାତରେ ବିଭୂତି ବଟୁଆ ଗୋଟିଏ ଧାରଣ କଲେ । ମଣ୍ଡପରୁ ଓହ୍ଲାଇ ଗୁରୁଙ୍କୁ ସ୍ମରଣ କରି ଭିକ୍ଷା ପାଇଁ ବାହାରିଲେ । ତାଙ୍କର ଏ ବେଶ ଦେଖି କୁକୁର ମଧ୍ୟ ବିଶ୍ୱାସ କରି ପାରିଲା ନାହିଁ । ତେଣୁ କୁକୁର ତାଙ୍କୁ ଗୋଡ଼ାଇଲା । ଗୋବିନ୍ଦଚନ୍ଦ୍ର ଭୟଭୀତ ହେଲେ ଓ ବାଡ଼ି ଉଠାଇ ରାଜା କୁକୁରକୁ ତଡ଼ିବାକୁ ଚେଷ୍ଟା କଲେ । ଏ ଦୃଶ୍ୟ ନଗରବାସୀଙ୍କ ମନରେ କଷ୍ଟଦେଲା । ଆବାଳ ବୃଦ୍ଧ ବନିତା ରୋଦନ କରିବାକୁ ଲାଗିଲେ । *

**ଧର୍ମମତ :**—ଯଶୋବନ୍ତଙ୍କର ଧର୍ମମତ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ଯେ ସେ ଥିଲେ ଜ୍ଞାନମିଶ୍ରା ଭକ୍ତିରେ ବିଶ୍ୱାସୀ ଓ ନିବୃତ୍ତି ମାର୍ଗର ପଥିକ । ପଞ୍ଚସଖା ପିଣ୍ଡ ମଧ୍ୟରେ ରାଧାକୃଷ୍ଣଙ୍କ ଲୀଳାକୁ ଅବଲୋକନ କରି ପାରୁଥିଲେ ଓ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ପ୍ରତିଫଳନ ବା ଉପଲବ୍ଧି ବୋଲି ଅନୁଭବ କରୁଥିଲେ । ଏ ବିଷୟ ସେମାନେ ନିଜ ନିଜ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଯଶୋବନ୍ତଙ୍କ ପ୍ରେମଭକ୍ତି ବ୍ରହ୍ମଗୀତା'ରେ ଏ ବିଷୟରେ ବର୍ଣ୍ଣନା ରହିଛି । ଯୋଗମାୟାଙ୍କଠାରେ ଯୁଗ୍ମମୂର୍ତ୍ତି ଆବିର୍ଭୂତ ହୋଇଛନ୍ତି । ଯୋଗମାୟାଙ୍କ ବକ୍ଷର ଦକ୍ଷିଣ ଭାଗରେ ରାଧାଙ୍କର ବାମ ଚରଣ ଓ ବାମ ଭାଗରେ କୃଷ୍ଣଙ୍କର ଦକ୍ଷିଣ ପାଦ ଅବସ୍ଥିତ । ଅନ୍ୟ ଦୁଇଟି ପାଦ ଛନ୍ଦାଛନ୍ଦି ହୋଇ ରହିଛି । ରାଧାଙ୍କର ଏକଚରଣ କୃଷ୍ଣଙ୍କ କଟି ଭାଗରେ ଓ କୃଷ୍ଣଙ୍କ ଚରଣ ରାଧାଙ୍କ କଟି ଦେଶରେ ଛନ୍ଦି ହୋଇ ରହିଛି । ପିଣ୍ଡରେ ରାଧାକୃଷ୍ଣଙ୍କର ଯେଉଁ ଆରୋପ କରିଛନ୍ତି ତାହାହିଁ ହେଉଛି ବ୍ରହ୍ମାଣ୍ଡର ଉପଲବ୍ଧି । † ଏହା ଜୀବ ପରମ ନାମରେ ମଧ୍ୟ ଅଭିହିତ । ଏପରି ଅନୁଭୂତି ଉତ୍କଳୀୟ

---

* ନାଇବସ୍ତ୍ର ଦେଖି ଆସି ବେଢ଼ିଲେ କୁକୁର
ବାଡ଼ି ଉଚାଇଣ ରାଜା ହୁଅଇ କାତର ।
ରାଜା ଭିକ୍ଷା ମାଗିବାର ଦେଖି ନରଜନ
ବାଳବୃଦ୍ଧ ରୋଦନ କରନ୍ତି ଘନ ଘନ । (ପଦ-୪୭୨-୭୩)

† ଯଶୋବନ୍ତ ଦାସ-ପ୍ରେମଭକ୍ତି ବ୍ରହ୍ମଗୀତା-ଦ୍ୱିତୀୟ ଅଧ୍ୟାୟ ପଦ ୭୧-୭୩

ମାନଙ୍କର ବିଶେଷତ୍ୱ । ମାତ୍ର କେତେ କେତେ ସମାଲୋଚକ ପଞ୍ଚସଖା ତଥା ଯଶୋବନ୍ତଙ୍କୁ ସହଜିଆ ବୈଷ୍ଣବ ଶ୍ରେଣୀର ଅନ୍ତର୍ଭୁକ୍ତ ବୋଲି ଅଭିହିତ କରନ୍ତି । ଯଶୋବନ୍ତଙ୍କ ରଚିତ 'ଗୀତ ଗୋବିନ୍ଦଚନ୍ଦ୍ର'ର ଭିତ୍ତି ଉପରେ ତାଙ୍କ ଅନୁମାନ ପର୍ଯ୍ୟବସିତ ହୋଇଥିବା ଜଣାଯାଏ । ବିନାୟକ ମିଶ୍ର ସୃଷ୍ଟି ସଂପର୍କରେ ମତ ଦିଅନ୍ତି, "ଯଶୋବନ୍ତ ଦାସ ଚେତନ ବା ଅତ୍ମାର ସୃଷ୍ଟି ବୋଲି ମତବ୍ୟକ୍ତ କରିଥିବାରୁ ସେ ଜନକସମ୍ପ୍ରଦାୟୀ ଅଟନ୍ତି । ଅଷ୍ଟାଦଶ ଶତାବ୍ଦୀର ଦୀନକୃଷ୍ଣ ଦାସ ଲେଖିଛନ୍ତି ଯେ ଯଶୋବନ୍ତ ଦାସ ଶ୍ୟାମାନନ୍ଦୀ ପନ୍ଥୀ ଥିଲେ । ବର୍ତ୍ତମାନ ଦେଖାଯାଉଅଛି ଯେ ଯଶୋବନ୍ତ ନାଦରୁ ବିନ୍ଦୁର ଉତ୍ପତ୍ତି ବୋଲି କହୁଅଛନ୍ତି । ଜୈନମାନେ ପରମାଣୁର କ୍ଷଣିକତ୍ୱ ବିଶ୍ୱାସ କରି ଆତ୍ମାର ନିତ୍ୟତ୍ୱ ମାନୁଥିଲେ । ଗୋରକ୍ଷ ନାଥ, ମଲ୍ଲିକାନାଥ ପ୍ରଭୃତି ବୋଧହୁଏ ଜନକ-ସମ୍ପ୍ରଦାୟୀ ଜୈନ ଅଟନ୍ତି । ସେଥିପାଇଁ ଓଡ଼ିଶାର ନାଥ-ସମ୍ପ୍ରଦାୟ ଯଶୋବନ୍ତ ଦାସଙ୍କ ରଚିତ 'ଗୀତ ଗୋବିନ୍ଦଚନ୍ଦ୍ର' ଗୀତକୁ ଗାଇ ଦ୍ୱାର ଦ୍ୱାର ବୁଲି ଭିକ ମାଗୁଥିଲେ ।" †

ବୌଦ୍ଧଧର୍ମର ସହଜଯାନରୁ ସହଜିଆ ଧର୍ମ ଉତ୍ପତ୍ତି । ସହଜଯାନୀମାନେ ପ୍ରଥମେ ପ୍ରବୃତ୍ତିର ଚରିତାର୍ଥ କରନ୍ତି । ତାହାପରେ ସେମାନେ କ୍ରମଶଃ ଆନନ୍ଦ ଲଭ କରନ୍ତି । ଆନନ୍ଦ, ପରମାନନ୍ଦ, ସହଜାନନ୍ଦ, ବିରମାନନ୍ଦ ଏହି କ୍ରମରେ ଏହା ଲଭ ହୁଏ । ମହାଯାନୀମାନେ ଗ୍ରହଣ କରୁଥିବା ଶୂନ୍ୟ ବା ନିର୍ବାଣର ଅନୁରୂପ ହେଉଛି ଏହି ବିରମାନନ୍ଦ । ପରବର୍ତ୍ତୀ ସମୟରେ ବୈଷ୍ଣବଧର୍ମାବଲମ୍ବୀମାନେ ସହଜଯାନଦ୍ୱାରା ପ୍ରଭାବିତ ହେଲେ । ଏମାନେ ଯେଉଁ ପନ୍ଥା ଗ୍ରହଣ କଲେ ତାହା ସହଜିଆ ଧର୍ମ ଭାବରେ ପରିଚିତ ହେଲା । ସ୍ୱକୀୟାଠାରୁ ପରକୀୟା ପ୍ରୀତିକୁ ଏଥିରେ ଅଧିକ ଗୁରୁତ୍ୱ ଦିଆଯାଏ ଏବଂ ସହଜିଆ ଭଜନର କ୍ରମିକ ସୋପାନ ହେଉଛି ନାମ, ମନ୍ତ୍ର, ଭାବ, ପ୍ରେମ ଓ ରସ । ରସାଶ୍ରୟ ହିଁ ପରମ ଆଶ୍ରୟ । ସହଜିଆ ଧର୍ମ କହିଲେ ସ୍ଥୂଳ ଭାବରେ ଏହାହିଁ ବୁଝିବାକୁ ହେବ । ମାତ୍ର ଉତ୍କଳୀୟ ବୈଷ୍ଣବମାନେ ନିବୃତ୍ତି ମାର୍ଗର ପଥିକ ଥିଲେ ଏବଂ ସହଜିଆ ଧର୍ମଠାରୁ ଏମାନଙ୍କ ଧର୍ମଧାରା ପୃଥକ୍ ଥିଲା । କିନ୍ତୁ ପ୍ରବୃତ୍ତି ମାର୍ଗର କୌଣସି ପ୍ରଭାବ ଏମାନଙ୍କଠାରେ ପଡ଼ି ନ ଥିଲା ବୋଲି କୁହାଯାଇ ନ ପାରେ । ପ୍ରବୃତ୍ତିମାର୍ଗୀ ଚଣ୍ଡୀଦାସଙ୍କ ପଦାବଳୀ ପାଠକରି ଶ୍ରୀଚୈତନ୍ୟ ତନ୍ମୟ ହେଉଥିଲେ ବୋଲି ତାଙ୍କୁ କିମ୍ବା ତାଙ୍କର ପଞ୍ଚସଖାଙ୍କୁ ପ୍ରବୃତ୍ତିମାର୍ଗୀ ବା ସହଜିଆ ଧର୍ମର ଉପାସକ ବୋଲି ଗ୍ରହଣ କରି ନେବା ସମୀଚୀନ ମନେ ହୁଏ ନାହିଁ । ସେମାନେ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ ଅର୍ଥାତ୍ ରାଧାକୃଷ୍ଣ ଲୀଳାକୁ ଦର୍ଶନ କରି ପାରୁଥିଲେ । କେବଳ ଦର୍ଶନ କରୁନଥିଲେ । କିପରି ଦର୍ଶନ କରିବାକୁ ହୁଏ ତାହାର ଉପାୟ ବା ସାଧନ ମାର୍ଗ ମଧ୍ୟ ଦର୍ଶାଇ ଦେଉଥିଲେ । କିନ୍ତୁ ଯୋଗ ସାଧନାର ଏହି ମାର୍ଗ ଗୌଡ଼ୀୟମାନଙ୍କର

† ପଣ୍ଡିତ ବିନାୟକ ମିଶ୍ର-ଓଡ଼ିଆ ସାହିତ୍ୟର ଇତିହାସ – ପୃଷ୍ଠା-୭୮ ୧୯୬୨-ସତ୍ୟଭାମା ପୁସ୍ତକ ଭଣ୍ଡାର ।

ନୁହେଁ ପଞ୍ଚସଖାଙ୍କ ଆଚରିତ ଧର୍ମପନ୍ଥା ସହଜିଆ ଧର୍ମରେ ନାହିଁ । ବରଂ ଏହା ସନାତନ ଧର୍ମରୁ ସୃଷ୍ଟ । ଏମାନେ ପାତଞ୍ଜଳୀଙ୍କ ଯୋଗ ସାଧନା ଉପରେ ଅଧିକ ଗୁରୁତ୍ବ ଦେଉଥିବା ପରିଲକ୍ଷିତ ହୁଏ । ††

ଯଶୋବନ୍ତଙ୍କ 'ଗୀତ ଗୋବିନ୍ଦଚନ୍ଦ୍ର'ରେ ଯୋଗ ଉପରେ ଅଧିକ ଗୁରୁତ୍ବ ଦିଆଯାଇଥିବା ଲକ୍ଷ୍ୟ କରିଯାଏ । ମଧ୍ୟ ଯୁଗରେ ଭାରତୀୟମାନଙ୍କ ମଧ୍ୟରେ ନାଥଧର୍ମ ଅଧିକ ପରିଚିତ ଓ ପ୍ରସାରିତ ହୋଇଥିଲା । ଯୋଗକୁ ନାଥଧର୍ମୀମାନେ ଅଧିକ ଗୁରୁତ୍ବ ଦେଉ-ଥିଲେ । ମହେଞ୍ଜୋଦାରରୁ ଯୋଗାସନରେ ଆସୀନ କୁଣ୍ଡଳୀ ପରିହିତ ଏକ ଶିବମୂର୍ତ୍ତି ମିଳିଅଛି । ଏହା ଯୋଗୀସମ୍ପ୍ରଦାୟମାନଙ୍କର ଉପାସ୍ୟ ଦେବତା ବୋଲି ଗବେଷକମାନେ ମତବ୍ୟକ୍ତ କରିଛନ୍ତି ଏବଂ ସେମାନଙ୍କର ମତ ଯେ ନାଥଧର୍ମ ହେଉଛି ବୁଦ୍ଧଧର୍ମର ପରବର୍ତ୍ତୀ ରୂପ । ଶୂନ୍ୟ ଅବଲମ୍ବୀ ବୌଦ୍ଧଧର୍ମରୁ ନାଥଧର୍ମ ସମ୍ଭୂତ । ବୁଦ୍ଧଙ୍କ ନିର୍ବାଣ ପରେ ତାଙ୍କ ସଂଘର ନୀତି-ସ୍ଖଳନ ଦେଖା ଦେଇଥିଲା । ବୌଦ୍ଧ ଶ୍ରମଣମାନେ ପ୍ରବୃତ୍ତି ମାର୍ଗକୁ ଗୋଡ଼ ଖସାଇଲେ । ଏଥିରୁ ବୌଦ୍ଧ ଧର୍ମକୁ ରକ୍ଷା କରିବାପାଇଁ ଯାନ ଓ ବଜ୍ରଯାନ ଓ ସହଜଯାନ ସୃଷ୍ଟି ହେଲା ତଥାପି ଏଥିରେ ସୁଫଳ ମିଳିଲା ନାହିଁ । ତେଣୁ ଗୋରେଖ, ଜଳନ୍ଧର ପ୍ରଭୃତି କେତେଜଣ ସହଜ ମାର୍ଗର ସାଧୁ କଳୁଷ ଗ୍ରସ୍ତ ବୌଦ୍ଧ ଧର୍ମର ପରିବର୍ତ୍ତନ କରିବାପାଇଁ ପ୍ରଯତ୍ନ କଲେ । ଏମାନେ ପ୍ରବୃତ୍ତି ଆଡ଼ୁ ମନକୁ ଟାଣି ଆଣିବାପାଇଁ ଯଥାସମ୍ଭବ ପ୍ରଚେଷ୍ଟା ଚଳାଇଲେ । ଯୋଗସାଧନକୁ ଅଧିକ ଗୁରୁତ୍ବ ଦେଉଥିବାରୁ ଯୋଗୀଶ୍ରେଷ୍ଠ ଶିବ ଏମାନ-ଙ୍କର ଆରାଧ୍ୟଦେବତା ହେଲେ । କ୍ରମେ ନାଥଧର୍ମର ଜନପ୍ରିୟତା ବୃଦ୍ଧି ପାଇଲା ଓ ଭାରତ ବାହାରେ ନେପାଳ ପ୍ରଭୃତି ରାଜ୍ୟରେ ମଧ୍ୟ ଏହା ଆଦୃତ ଲାଭ କଲା । ଭାରତର ବିଭିନ୍ନ ଧର୍ମର ପ୍ରଚାରକଗଣ ଶ୍ରୀ କ୍ଷେତ୍ରକୁ ଆସିଛନ୍ତି ଓ ଧର୍ମପ୍ରଚାର କରିବା ସଙ୍ଗେ ସଙ୍ଗେ ଧର୍ମପୀଠମାନ ସ୍ଥାପନ କରି ଯାଇଛନ୍ତି । ମାତ୍ର ସେସବୁ ମଧ୍ୟରୁ ଅଧିକାଂଶ ଧର୍ମତତ୍ତ୍ବ ସୀମିତ ଭକ୍ତଙ୍କଦ୍ୱାରା ଗୃହୀତ ଓ ପ୍ରଚାରିତ ହୋଇଛି । କେବଳ ଶ୍ରୀଚୈତନ୍ୟଙ୍କ ବୈଷ୍ଣବଧର୍ମ ଓ ଗୋରଖ ନାଥଙ୍କ ନାଥଧର୍ମ ହିଁ ଶିକ୍ଷିତ, ବ୍ରାହ୍ମଣ ଚଣ୍ଡାଳ ନିର୍ବିଶେଷରେ ଓଡ଼ିଶାର ଘରେ ଘରେ ପରିଚିତ । ସମାଲୋଚକମାନେ ଏହାର କାରଣ ଅନୁଧ୍ୟାନ କରି କହନ୍ତି ଯେ ଏମାନଙ୍କ ଧମନୀରେ ଓଡ଼ିଆର ରକ୍ତ ପ୍ରବାହିତ ହେଉଥିବାରୁ ଏମାନେ ଓଡ଼ିଶାର ପାଣି ପବନ ସହିତ ମଧ୍ୟ ପରିଚିତ ହୋଇ ଯାଇ ପାରିଲେ । *

ଏମାନଙ୍କ ଯୋଗ ସାଧନାର ମୁଖ୍ୟ ଲକ୍ଷ୍ୟଥିଲା ମରଣଶୀଳକୁ ଆଧ୍ୟାତ୍ମିକ ଶରୀରରେ ପରିଣତ କରିବା ଅର୍ଥାତ୍ ଶରୀରକୁ ଜରାମରଣ ରହିତ କରିବା । ଅନ୍ୟ ଏକ ଲକ୍ଷ୍ୟ

†† ଆର୍ତ୍ତବଲ୍ଲଭ ମହାନ୍ତି-ମୁଖବନ୍ଧ- ଶିବସ୍ୱରୋଦୟ

* ଦୋଳଗୋବିନ୍ଦ ଶାସ୍ତ୍ରୀ—ନାଥଧର୍ମ

ହେଉଛନ୍ତି, ସହଜଯାନୀ ବୌଦ୍ଧମାନେ ଯେପରି ପ୍ରବୃତ୍ତିମୂଳକ ହୋଇ ଜନସାଧାରଣଙ୍କ ମଧ୍ୟରେ ବ୍ୟଭିଚାର ପ୍ରବେଶ କରାଇଥିଲେ ତହିଁରୁ ସମାଜକୁ ମୁକ୍ତ କରିବା । ଯୋଗର ପରାକାଷ୍ଠା ହେତୁ ଅଣିମା, ଲଘିମା ଆଦି ଅଷ୍ଟ ବିଭୂତି ଏମାନେ ଲାଭ କରୁଥିଲେ । ନାଥଧର୍ମ ନବମ ବା ଦଶମ ଶତାବ୍ଦୀ ବେଳକୁ ଉଦ୍ଭୂତ ହୋଇ କ୍ରମେ କ୍ରମେ ବିସ୍ତାର ଲାଭ କରିଥିବା ଜଣାଯାଏ । ନାଥଧର୍ମର ପ୍ରଚାର ସଙ୍ଗେ ସଙ୍ଗେ ବିଭିନ୍ନ ଧର୍ମଗ୍ରନ୍ଥ ଓ ସାହିତ୍ୟ ରଚନାରେ ମଧ୍ୟ ତାହା ସ୍ଥାନ ପାଇଥିବା ପରିଲକ୍ଷିତ ହୁଏ । ନିଦର୍ଶନ ସ୍ୱରୂପ ଶିଶୁବେଦ, ଅମରକୋଷ ଗୀତା, ସପ୍ତାଙ୍ଗଯୋଗ ଧାରଣଂ, ଅଷ୍ଟାଙ୍ଗ ଯୋଗସାର ଟୀକା ଓ ଗୋରେକ୍ଷ ଗୀତା ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ଯଶୋବନ୍ତଙ୍କ ଗୋବିନ୍ଦଚନ୍ଦ୍ର ଏହି ପରଂପରା ଉପରେ ସୃଷ୍ଟି ହୋଇଥିବା ଏକ ରଚନା । ଯଶୋବନ୍ତଙ୍କୁ ସହଜିଆ ମାର୍ଗର ପଥିକ ଭାବରେ ଗ୍ରହଣ କରିବା ଯଥାର୍ଥ ନୁହେଁ ।

ନାଥଧର୍ମୀ ଯୋଗସାଧନା ମାଧ୍ୟମରେ ଯେଉଁ ଦୁଇଟି ଲକ୍ଷ୍ୟ ହାସଲ କରୁଥିଲା ସେଇ ଦୁଇଟି 'ଗୀତ ଗୋବିନ୍ଦଚନ୍ଦ୍ର'ରେ ପ୍ରକାଶ ଲାଭ କରିଛି । ଶରୀରକୁ ଜରାମରଣ ରହିତ କରିବା ନାଥଧର୍ମର ପ୍ରଥମ ଲକ୍ଷ୍ୟଥିଲା । ଗୋବିନ୍ଦଚନ୍ଦ୍ରଙ୍କୁ ଜରାମୃତ୍ୟୁ ଜୟୀ କରିବାପାଇଁ ତାଙ୍କମାତା ତାଙ୍କୁ ଯୋଗୀ ହେବାକୁ ପ୍ରବର୍ତ୍ତାଇ ଥିଲେ । କାରଣ ସଂସାରରେ ଯେଉଁମାନେ ଅବତରଣ କରନ୍ତି, ପ୍ରତ୍ୟେକ ମାୟା ଶରୀର ଧାରଣ କରନ୍ତି । ଦିଗପାଳମାନେ ମଧ୍ୟ ମାୟାଦେହ ଧାରଣକରି ପୃଥିବୀରେ ଅବତରଣ କରନ୍ତି । ଦେବତାଗଣ, ଅବତାର ହୋଇ ମର୍ତ୍ତ୍ୟରେ ଆବିର୍ଭୂତ ହୋଇଥିଲେ । ସେମାନେ ନିଜର ମାୟାଦେହକୁ ଓ ପ୍ରାଣକୁ ରଖି ପାରି ନାହାନ୍ତି । ପୁଣି ମୁକ୍ତାଦେଈ କଥା ପ୍ରସଙ୍ଗରେ କହିଛନ୍ତି, ଗୋବିନ୍ଦଚନ୍ଦ୍ରଙ୍କର ପିତା ଅନିନ୍ଦ୍ୟରୂପ ସମ୍ପନ୍ନ ଥିଲେ । ସେ ମଧ୍ୟ ମୃତ୍ୟୁର କବଳରେ ପଡ଼ିଲେ ଓ ଅଗ୍ନିରେ ତାଙ୍କର ଶରୀର ଦଗ୍ଧୀଭୂତ ହେଲା । ଗୋବିନ୍ଦଚନ୍ଦ୍ର ଯେପରି ରାଜସିଂହାସନ ଓ ବିପୁଳ ଐଶ୍ୱର୍ଯ୍ୟ ତ୍ୟାଗକରି ଯୋଗୀ ହୋଇ ପାରିଲେ ତହିଁରେ ନାଥଧର୍ମର ପ୍ରଥମ ଲକ୍ଷ୍ୟଟି ସାଧିତ ହୋଇଥିବା କୁହାଯାଇପାରେ । ସହଜଯାନୀ ବୌଦ୍ଧମାନଙ୍କଦ୍ୱାରା ସମାଜରେ ପ୍ରବୃତ୍ତିଜନିତ ବାସନାକୁ ନିର୍ବାପିତ କରିବାରେ ନାଥ ସଂପ୍ରଦାୟୀମାନେ ପ୍ରଯତ୍ନ କରିଥିଲେ । ଯୋଗ ସାଧନା ଏହାର ମାଧ୍ୟମ ଥିଲା । ଏହା ସହିତ ଦେଶବାସୀଙ୍କୁ ପ୍ରବୁଦ୍ଧ କରିବାପାଇଁ ଏମାନେ ପଦବ୍ରଜରେ ସାରାଦେଶ ଭ୍ରମଣ କରୁଥିଲେ । ଗୋବିନ୍ଦଚନ୍ଦ୍ରରେ ଏ ବିଷୟଟି ମଧ୍ୟ ବର୍ଣ୍ଣିତ । ରମ୍ଭାଗଣିକା ଓ ରାଢ଼ିଆଣୀର ଗୋବିନ୍ଦଚନ୍ଦ୍ରଙ୍କୁ ରତିଭିକ୍ଷା ଘଟଣାରୁ ଏହା ଯେପରି ସୂଚିତ ହୁଏ, ଗୋବିନ୍ଦଚନ୍ଦ୍ର ସେଥିରୁ ନିବୃତ୍ତ ହେବା ପ୍ରସଙ୍ଗରୁ ଯୋଗସାଧନାର ଉପାଦେୟତା ସଂପର୍କରେ ମଧ୍ୟ ସେହିପରି ପରିଚୟ ମିଳେ ।

ଉତ୍କଳୀୟ ବୈଷ୍ଣବମାନେ ବ୍ରହ୍ମଜ୍ଞାନ ଭିତରେ ମଧ୍ୟ ପ୍ରେମଭକ୍ତିର ଉପଲବ୍ଧି କରୁଥିଲେ । ସାଧକ ନିତ୍ୟସ୍ଥଳରେ ବିଦ୍ୟମାନ ରାଧାକୃଷ୍ଣଙ୍କ ଅଲୌକିକ ପ୍ରେମଲୀଳାକୁ

ଆସ୍ୱାଦନ କରନ୍ତି । ତାହା ହେଉଛି ପ୍ରେମଭକ୍ତି । ପଞ୍ଚସଖାଙ୍କ ରଚନାରୁ ଏହାର ପ୍ରମାଣ ମିଳିଥାଏ । ସାଧକର ଅଙ୍ଗସିଦ୍ଧି ହେଲେ ସେ ଫଳକୁ ତ୍ୟାଗକରି ସ୍ତ୍ରୀ ରୂପରେ ପରିବର୍ତ୍ତିତ ହୋଇପାରେ । ପ୍ରେମଭକ୍ତିମାର୍ଗୀମାନେ ବିଶ୍ୱାସ କରନ୍ତି, ପୁରୁଷ ଅଙ୍ଗରେ ଭଗବତ୍ ପ୍ରାପ୍ତି ସମ୍ଭବ ନୁହେଁ । କାରଣ ସେମାନଙ୍କ ମତରେ ଭଗବାନ୍ ଶ୍ରୀକୃଷ୍ଣ କେବଳ ପୁରୁଷ । ଅନ୍ୟ ସମସ୍ତେ ନାରୀ । ଜଗନ୍ନାଥ ଦାସ ନାରୀରୂପ ଧାରଣ କରି ରାଜାଙ୍କ ସମ୍ମୁଖରେ ତାଙ୍କର ଅଲୌକିକ ଶକ୍ତିର ପରୀକ୍ଷା ଦେଇଥିଲେ । ରାଧାଭାବରେ ପରମ ପୁରୁଷ ଶ୍ରୀକୃଷ୍ଣଙ୍କୁ ଲାଭ କରିବାପାଇଁ ସାଧକ କିପରି ପ୍ରୟାସୀ ତା'ର ଉଦାହରଣ ଯଶୋବନ୍ତଙ୍କ ରଚନାରୁ ମିଳିଥାଏ । † ବଳରାମ ଦାସଙ୍କ 'ବେଦାନ୍ତସାର ଗୁପ୍ତଗୀତା' ଦେବଦୁର୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ'ରେ ମଧ୍ୟ ସମ ମତବାଦର ପରିଚୟ ମିଳିଥାଏ ।

ସାଧାରଣତଃ ସନ୍ଥମାନେ ଗୋଟିଏ ଗୋଟିଏ ସମ୍ପ୍ରଦାୟ ମାନି ଚଳନ୍ତି । ସେମାନଙ୍କର ଭେକ, ଚଳଣି, ପଦ୍ଧତି ଅନ୍ୟଠାରୁ ପୃଥକ୍ । ସେମାନଙ୍କ ଭିତରେ ସଂକୀର୍ଣ୍ଣତା କ୍ରମେ ପ୍ରବେଶ କରେ ଓ ଆତ୍ମାଭିମାନ ବଢ଼ିଯାଏ । ତେଣୁ ଗୋଟିଏ ସଂପ୍ରଦାୟ ଅନ୍ୟକୁ ଗ୍ରହଣ କରିପାରେ ନାହିଁ । ଏପରିକି ଆଦୌ ସହ୍ୟ କରି ପାରେନାହିଁ । ଷୋଡ଼ଶ ଶତାବ୍ଦୀର ସନ୍ଥ କବିମାନେ ସେପରି କରି ନାହାନ୍ତି । ବାଡ଼ବାଡ଼ ଦେଇ ନିଜର ମାର୍ଗଟିକୁ ପୃଥକ୍ ରଖି ନାହାନ୍ତି, କିମ୍ବା ସେଠି ଅଟକି ରହି ନାହାନ୍ତି । ସେମାନେ ନିଜର ବାସନାକୁ ଜଗନ୍ନାଥ ଚେତନା ମଧ୍ୟରେ ଏକାଠି କରି ଦେଇଛନ୍ତି । ମାତ୍ର କୌଣସି ପୌତ୍ତଳିକତାର ଶିକାର ମଧ୍ୟ ହୋଇ ନାହାନ୍ତି । "ସେମାନେ ଦେବ କଳ୍ପନାକୁ ଅସ୍ୱୀକାର କରି ନ ଥିଲେ ମଧ୍ୟ ଏକ ଦେବନାଶକ ବସ୍ତୁର କଳ୍ପନା ବି କରିଛନ୍ତି । ଚତୁର୍ଦ୍ଧା ମୂରତିଙ୍କୁ ଗୋଟିଏ ରୂପ ବୋଲି ଦେଖିଛନ୍ତି । ସିଦ୍ଧିଲାଭ ନିନ୍ଦା କରି ନାହାନ୍ତି, ମାତ୍ର ସିଦ୍ଧିଲାଭକୁ ଅତିକ୍ରମ କରି ଯାଇଛନ୍ତି । ଭାରତୀୟ ସନ୍ଥ ପରଂପରାର ସେହି ବିଶେଷ ଯୁଗଟିରେ ସେମାନେ ଓଡ଼ିଶାରେ ସେହି ଉତ୍କ୍ରମଣ ଚେତନାଟିର ପ୍ରତୀକ ହୋଇ ରହିଛନ୍ତି ।" × × "ସେମାନେ ଖୋଳ ଧରିଛନ୍ତି, ସଙ୍କୀର୍ତ୍ତନ କରିଛନ୍ତି, ରାସରୁ ନିତ୍ୟରାସ ପର୍ଯ୍ୟନ୍ତ ସବୁ ଲୀଳାରେ ଅଂଶ ଗ୍ରହଣ କରିଛନ୍ତି । ମାତ୍ର ଆଦୌ କେଉଁଟି ଭିତରେ ବାନ୍ଧି ହୋଇ ରହିଯାଇ ନାହାନ୍ତି ।" *

---

† ଆବର ମନ୍ତ୍ର ଯନ୍ତ୍ର ଯେତେ, ନିତ୍ୟକୁ ନ ଘଟେ ପ୍ରଣତେ
ଫୁଲଙ୍ଗ ସ୍ତ୍ରୀଲିଙ୍ଗ ବିସ୍ତର, ପ୍ରେମ ଭକ୍ତିରେ ନିତ୍ୟ ଘର ।
ସ୍ତ୍ରୀ ରୂପ ଅଙ୍ଗ ନାହିଁ ଯହିଁ, ସ୍ୱେକା ପୁରୁଷ ଭାବଗ୍ରାହୀ
ଯେ ତାଙ୍କୁ ପ୍ରେମଭକ୍ତି କରେ, ଶରୀର ବନ୍ଧ ଏ ସଂସାରେ ।
ପ୍ରେମ ଭକତି ଯେ କରଇ, ସେ ପ୍ରାଣୀ ନିତ୍ୟରେ ବସଇ । (ପ୍ରେ : ଭ : ବ୍ର : ଗୀ)

* ଶ୍ରୀ ଚିତ୍ତରଞ୍ଜନ ଦାସ-ସନ୍ଥ (ଭକ୍ତ) ସାହିତ୍ୟ-ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୨-ପୃଷ୍ଠା ୭୨

ଶ୍ରୀ ଚୈତନ୍ୟ ଓଡ଼ିଶା ଆସିବା ପରେ ଏମାନେ ପ୍ରତ୍ୟେକେ ପୁଣି ଆସି ତାଙ୍କ ସହିତ ଯୋଗ ଦେଇଥିଲେ ଓ ଚୈତନ୍ୟଙ୍କ ଆଦେଶରେ ଗୋସ୍ୱାମୀମାନଙ୍କଠାରୁ ମନ୍ତ୍ର ଗ୍ରହଣ କରି ଦୀକ୍ଷିତ ହୋଇଥିଲେ । ଖୋଲ କରତାଳ ଧରି ନାଚି ନାଚି ବଡ଼ଦାଣ୍ଡରେ ସଂକୀର୍ତ୍ତନ କରିବା ମଧ୍ୟ ଶ୍ରୀ ଚୈତନ୍ୟଙ୍କର ପ୍ରଭାବ । † ଏହି ସନ୍ଥମାନଙ୍କର ଶ୍ରୀ ଚୈତନ୍ୟଙ୍କ ଧର୍ମ ସହିତ ଉପରି ସମ୍ବନ୍ଧ ଥିଲି ତାହା ଯଶୋବନ୍ତଙ୍କ ରଚିତ 'ଚଉରାଶି ଆଜ୍ଞା'ରେ ସୂଚିତ ହୋଇଛି । ଯଶୋବନ୍ତ ନିଜସ୍ୱ ମାର୍ଗ ବିଷୟରେ ଏହି ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । †† ଷୋଡ଼ଶ ଶତାବ୍ଦୀର ସନ୍ଥ ଗଣ ଚୈତନ୍ୟଧର୍ମ ସହିତ ସଂଯୁକ୍ତ ଥିଲେ ହେଁ ରାଜଧର୍ମର କୃପା ପଡ଼ିଥିଲେ ମଧ୍ୟ ନିଜସ୍ୱ ମାର୍ଗ ଅର୍ଥାତ୍ ଅସଲ ଅଧ୍ୟାତ୍ମ ମାର୍ଗକୁ ଛାଡ଼ି ପାରି ନାହାନ୍ତି ।

**ଓଡ଼ିଶାର ନାଥ ଧର୍ମ** :—ଓଡ଼ିଶାର ଧର୍ମ, ଦର୍ଶନ, ସଂସ୍କୃତି ଓ ସାହିତ୍ୟର ବିକାଶ-ଆଲୋଚନା ବେଳେ ନାଥ ଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିବା ସ୍ୱୀକାର କରିବାକୁ ହେବ । ଯଦିଓ ନାଥପନ୍ଥୀମାନେ ସ୍ୱଳ୍ପ ସାହିତ୍ୟ ସୃଷ୍ଟି କରିଛନ୍ତି ତଥାପି ଓଡ଼ିଶାକୁ ନାଥଧର୍ମର ବିକାଶ ଭୂମି ଭାବରେ ଗ୍ରହଣ କରାଯାଇ ପାରେ । "ସହଜିଆ ବୌଦ୍ଧବାଦର ରୂପକାତ୍ମକ ସଂକେତ ଗୁହ୍ୟ ଅଭିଚାର, ଯୌନ ବ୍ୟଭିଚାର, ଜଟିଳ ତନ୍ତ୍ର ଓ କୁଟିଳ ସାଧନା ପରିହାର କରି ଯୋଗ ସାଧନା, ସଂସାର ଅନାସକ୍ତି ଓ ବୈରାଗ୍ୟଭାବନାନିବଦ୍ଧ ସନ୍ନ୍ୟାସ ମଧ୍ୟରେ ମୁକ୍ତି ଲାଭର ପନ୍ଥା ପ୍ରଦର୍ଶନ କରିବା ସେ କାଳରେ ଉଚ୍ଛୃଙ୍ଖଳ ଯୌନ ଆଚାରରେ ପୀଡ଼ିତ ପୂର୍ବୋତ୍ତର ଭାରତରେ କେବଳ ଓଡ଼ିଆର ହିଁ କୃତିତ୍ୱ ଓ ବିଶେଷତ୍ୱ ।" ✱ କେତେକ ସମାଲୋଚକ ନାଥଧର୍ମକୁ ସହଜିଆ ବୌଦ୍ଧଧର୍ମର ଏକ ଶାଖା ବୋଲି ମନେ

---

† ଚୈତନ୍ୟ ମଣ୍ଡଳି ଖୋଲ କରତାଳ ବଜାଇ ବୋଲନ୍ତି ହରି
ଚୈତନ୍ୟ ଠାକୁର ମଧ୍ୟେ ନୃତ୍ୟକାର ଦଣ୍ଡ କମଣ୍ଡଳ ଧାରି '
ଅନନ୍ତ ଅଚ୍ୟୁତ ସେନ ଯଶୋବନ୍ତ ବଳରାମ ଜଗନ୍ନାଥ
ଏ ପଞ୍ଚସଖା ହିଁ ନୃତ୍ୟ କରିଗଲେ ଗୌରାଙ୍ଗ ଚନ୍ଦ୍ର ସଙ୍ଗତ ।
(ଶୂନ୍ୟ ସଂହିତା)

†† କ୍ଷେତ୍ରଧାମ ଶ୍ରୀ ପୁରୁଷୋତ୍ତମ, ଭଜନ ଜଗନ୍ନାଥ ଧାମ ।
ଅଭେଦ ବସ୍ତୁର ମୋହର, ଚୈତନ୍ୟ ପ୍ରଭୁଙ୍କ ସଂଗର ।
ଇଷ୍ଟ ଜଗନ୍ନାଥ ବୋଲଇ, ଦେବା ଦାରୁ ବ୍ରହ୍ମ ଅଟଇ
ଧ୍ୟାନ ନିରାକାର ମଣ୍ଡଳ, ଅରୂପାନନ୍ଦ ଲକ୍ଷ୍ୟ ମୋର ।
(ଚଉରାଶି ଆଜ୍ଞା-ଯଶୋବନ୍ତ)

✱ ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ—ଓଡ଼ିଆ ସାହିତ୍ୟର ଇତିହାସ—୧୯୬୯ ପୃ ୧୪୮-୪୯

କରୁଥିଲେ ହେଁ ଏହା ଯଥାର୍ଥ ନୁହେଁ । ଅବଶ୍ୟ ବୌଦ୍ଧ ଧର୍ମର ପ୍ରଭାବକୁ ଅସ୍ୱୀକାର କରାଯାଇ ନ ପାରେ । ଶିବ ହେଉଛନ୍ତି ନାଥ ସଂପ୍ରଦାୟୀମାନଙ୍କର ଉପାସ୍ୟ ଦେବତା । ନାଥଧର୍ମ ଆର୍ଯ୍ୟ ଓ ଆର୍ଯ୍ୟେତର ପ୍ରାଚ୍ୟ ଶୈବଧର୍ମର ସଂକେତ ବହନ କରିଛି । ଏହି ଧର୍ମର ଆଦି ପ୍ରବର୍ତ୍ତକଙ୍କର ବାରଜଣ ଶିଷ୍ୟ ଥିଲେ ଓ ଏମାନଙ୍କ ମଧ୍ୟରେ ଗୋରକ୍ଷନାଥ ଜଣେ ବିଶିଷ୍ଟ ପ୍ରଚାରକ ଥିଲେ । ଓଡ଼ିଆରେ ମିଳୁଥିବା 'ଅମର କୋଷ ଗୀତା' ପାଣ୍ଡୁଲିପିରେ 'ନବନାଥ'ଙ୍କର ବନ୍ଦନା ହୋଇଛି । ସେଥିରେ ଗୋରଖନାଥ, ଜାଳନ୍ଧରନାଥ ଓ ଗୋପୀଚନ୍ଦ୍ର ନାଥ (ଗୋବିନ୍ଦଚନ୍ଦ୍ର) ଙ୍କର ନାମୋଲେଖ ରହିଛି । ସାରଳା ମହାଭାରତରୁ ଜଣାଯାଏ ସାରଳା ଦାସଙ୍କ ସମୟକୁ ଗୋରେଖ ନାଥଙ୍କର ସିଦ୍ଧି ଓ ମହିମା ଉତ୍କଳରେ ବହୁ ଭାବରେ ପ୍ରଚାରିତ ହୋଇ ସାରିଥିଲା । ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତାରେ ବର୍ଣ୍ଣନା ଅଛି ଯେ ପ୍ରାଚୀ ନଦୀ କୂଳରେ ଥିବା ଅରଣ୍ୟରେ ଗୋରଖ ନାଥ ଶୂନ୍ୟ ସାଧନା କରୁଥିଲେ ।

ଓଡ଼ିଶାର ନାଥ ଯୋଗୀମାନଙ୍କ ମଧ୍ୟରେ 'ଜଳାନ୍ଧର ନାଥ' ବା 'ହାଲପାଦ' ଜଣେ ବିଶିଷ୍ଟ ସାଧକ । ଏହାଙ୍କ ନାମ ହାଡ଼ିପା । ବ୍ରହ୍ମାଙ୍କଠାରୁ ଅଭିଶାପ ପାଇଁ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିବା ବୃତ୍ତାନ୍ତ ପୂର୍ବରେ ବର୍ଣ୍ଣିତ । ଏ ଜଣେ ବିଖ୍ୟାତ ସାଧକ ।

ନବନାଥଙ୍କ ମଧ୍ୟରେ ଗୋପୀଚନ୍ଦ୍ର ନାଥ (ଗୋବିନ୍ଦଚନ୍ଦ୍ର) ମଧ୍ୟ ହେଉଛନ୍ତି ଜଣେ ସିଦ୍ଧ ସାଧକ ଓ ସେ ହାଡ଼ିପାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିବା ବିଷୟ ଗୀତ ଗୋବିନ୍ଦ ଚନ୍ଦ୍ର'ରେ ବର୍ଣ୍ଣିତ ।

**ଗୁରୁବାଦ** :- ଗୁରୁଙ୍କ କୃପା ଓ ସହାୟତା ବିନା ସାଧକ ପରମ ସିଦ୍ଧି ଲାଭ କରିବା ସମ୍ଭବ ନୁହେଁ । ଗୁରୁ, ଭକ୍ତି, ମୁକ୍ତି ଦାୟକ । ବିଜ୍ଞାନ ଧାରର ସହାୟକ । ଗୁରୁ ଓ ଭଗବାନଙ୍କ ଭିତରେ କୌଣସି ପ୍ରଭେଦ ନାହିଁ । ଗୁରୁ ପିତା, ମାତା, ମହେଶ୍ୱର ସହ ତୁଳନୀୟ । ତେଣୁ ଗୁରୁଙ୍କୁ ସାକ୍ଷାତ ପରଂବ୍ରହ୍ମ ବୋଲି କୁହାଯାଉଛି । ସାଧନା ମାର୍ଗରେ ପାଦ ଦେବା ପୂର୍ବରୁ ଗୁରୁ ଗ୍ରହଣ କରିବାକୁ ହୁଏ । ଗୁରୁ କାହାରିକୁ ଶିଷ୍ୟ ହେବା ପାଇଁ ବାଧ୍ୟ କରନ୍ତି ନାହିଁ । ବରଂ ଗୁରୁ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରି ନ ପାରନ୍ତି । ନାଥ ଧର୍ମରେ ଏପରି ପରଂପରା ଅଛି ଯେ ଗୁରୁ, ବାରମ୍ବାର କରି ତିନିଥର ଶିଷ୍ୟ ଗ୍ରହଣ ନିମନ୍ତେ ଅନୁମତି ଦେବେ ନାହିଁ । ସମ୍ଭବତଃ ଏପରି କରିବାଦ୍ୱାରା, ଶିଷ୍ୟର ନିଷ୍ଠା ଓ ମନର ଏକାଗ୍ରତା ଗୁରୁ ପରୀକ୍ଷା କରନ୍ତି । ଶିଷ୍ୟ ହେବାପାଇଁ ଯିଏ ଉପଯୁକ୍ତ ବୋଲି ଗୁରୁ ଅନୁଭବ କରନ୍ତି ତାଙ୍କୁ ହିଁ ସେ ଗ୍ରହଣ କରନ୍ତି । କାରଣ ସାଧାରଣ ବ୍ୟକ୍ତି ଗୂଢ଼ ତତ୍ତ୍ୱ ବୁଝିବା ପାଇଁ ଅକ୍ଷମ । ବିଶେଷ ଭାବରେ ସହଜିଆ ସାଧକମାନଙ୍କର ପଦାବଳୀ ତୁଲ୍ୟ ଯେଉଁ ସବୁ ପଦ ସେମାନେ ସଂଯୋଗ କରନ୍ତି ତାହାର ଗୂଢ଼ ଅର୍ଥ ସମସ୍ତଙ୍କ ପାଖରେ ପ୍ରକାଶ କରନ୍ତି ନାହିଁ । ଷଷ୍ଠୀ ମେଳାରେ ସନ୍ନିବେଶିତ ଯଶୋବନ୍ତଙ୍କର ଏକ ଚଉତିଶାରେ

ବର୍ଣ୍ଣିତ ଅଛୁ—"ମାଆକୁ ମାଇଲେ ସ୍ୱର୍ଗକି ପାଇ ବାପକୁ ମାଇଲେ ଅନ୍ତମ୍ବର ହୋଇ/ଭାଇବୋହୂ ଦେଢ଼ଶୁର ପୀରତି କହେ ଯଶୋବନ୍ତ ଦାସ ମୁକତି ।" ଏଠି ବାହ୍ୟ ଅର୍ଥରେ ଦେଢଶୁର ଭାଇବୋହୂର ପ୍ରୀତିକୁ ବୁଝାଉଥିଲେ ହେଁ ଅନ୍ତର୍ନିହିତ ଅର୍ଥ ହେଉଛି ଜୀବ ପରମ ବା ଶ୍ୱାସ ପ୍ରଶ୍ୱାସର ପ୍ରୀତି । କିନ୍ତୁ ସାଧାରଣ ବ୍ୟକ୍ତିଙ୍କପାଇଁ ଗୁରୁ ଏ ଅର୍ଥକୁ ପ୍ରକାଶ କରୁ ନ ଥିଲେ । ସମ୍ଭବତଃ ଏହାର କାରଣ ହେଉଛି ସାଧାରଣ ଜନତା ଏହାର ବିକୃତ ଅର୍ଥକୁ କେବଳ ବୁଝିବେ ଓ ସନ୍ଥ ସାଧକମାନଙ୍କୁ ଅବଜ୍ଞା କରି ତାଙ୍କ ପାଖକୁ ଆସିବେ ନାହିଁ । ଗୁରୁମାନେ ଉପଯୁକ୍ତ ଶିଷ୍ୟଙ୍କ ମଧ୍ୟରେ ହିଁ ସୁବିଧାରେ ଗୁପ୍ତ ସାଧନା କରି ପାରିବେ ।

ଗୋବିନ୍ଦଚନ୍ଦ୍ର, ହାଡ଼ିପାଙ୍କ ପାଖରେ ପହଞ୍ଚିବା ପରେ ହାଡ଼ିପା ତାଙ୍କୁ ବିଭିନ୍ନ ଉପାୟରେ ପରୀକ୍ଷା କରିଛନ୍ତି । ଦୁଃସାଧ୍ୟ ଯୋଗମାର୍ଗର ଯନ୍ତ୍ରଣା ସମ୍ବନ୍ଧରେ ଗୋବିନ୍ଦ ଚନ୍ଦ୍ରଙ୍କୁ ସଚେତନ କରିଛନ୍ତି । ଶ୍ମଶାନ ଓ ଅରଣ୍ୟ ଜଙ୍ଗଲରେ ବୁଲିବା ଭୂମିରେ ଶୋଇବା ଅଭକ୍ଷ୍ୟ ଭକ୍ଷିବା ଇତ୍ୟାଦି କଷ୍ଟକର କାର୍ଯ୍ୟଗୁଡ଼ିକ ରାଜପୁତ୍ର ଗୋବିନ୍ଦଙ୍କ ପକ୍ଷରେ ଅସହ୍ୟ ହୋଇ ପାରେ । ମାତ୍ର ଗୋବିନ୍ଦଚନ୍ଦ୍ର ଅକ୍ଲେଶରେ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । କାରଣ ହାଡ଼ିପା ଥିଲେ ଜଣେ ଉତ୍ତମ ଗୁରୁ । ତାଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ଗୋବିନ୍ଦଚନ୍ଦ୍ର ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ପୁଣି ମୁକୁତା ଦେଇ ଗୁରୁଙ୍କର ମହତ୍ତ୍ୱ ବିଷୟରେ ପୁତ୍ରକୁ ଅବଗତ କରାଇଥିଲେ । ଯେତେ ଧର୍ମ କର୍ମ କଲେ ମଧ୍ୟ ଗୁରୁଙ୍କ ସେବା ବିନା ସମସ୍ତ ନିଷ୍ଫଳ । ଶିଷ୍ୟ କେବେ ହେଁ ଗୁରୁଙ୍କୁ ଅବିଶ୍ୱାସ କରିବା ଉଚିତ ନୁହେଁ । ଗୁରୁ ଯାହା କହନ୍ତି ସବୁ ଶିଷ୍ୟର ମଙ୍ଗଳ ପାଇଁ । କୋଟିଏ ସୁବର୍ଣ୍ଣ, ଅଷ୍ଟରତ୍ନ ଓ ଗୋଧନ ଦାନ ଇତ୍ୟାଦିଠାରୁ ଗୁରୁସେବା ଅଧିକ ଶ୍ରେୟସ୍କର । ସବୁଠାରୁ ବଡ଼ କଥା ହେଉଛି, ଗୁରୁ ଗ୍ରହଣ ବେଳେ ଜାତି ଭେଦର ପ୍ରଶ୍ନ ଉଠେ ନାହିଁ । ଗୁରୁ ଅଜାତ ହେଲେ ହେଁ ତାଙ୍କର ପଦବନ୍ଦନା କରିସିବା ଉଚିତ୍ । * ଗୁରୁଙ୍କଠାରେ ଯାହା ଶିକ୍ଷଣୀୟ ଥାଏ, ତାହାହିଁ ଶିଷ୍ୟ ଶିକ୍ଷାକରେ । ତାଙ୍କର ଧନ ଦୌଲତ, ଜାତି ଗୋତ୍ରର ବିଚାର ଶିଷ୍ୟ ପାଇଁ ମୂଲ୍ୟହୀନ । ଭାଗବତରେ ବର୍ଣ୍ଣିତ ଚବିଶ ଗୁରୁ ଉପାଖ୍ୟାନରେ ଜଗନ୍ନାଥ ଦାସ ତାହାହିଁ ସୂଚାଇଛନ୍ତି । ପଶୁ, ପକ୍ଷୀ, କୀଟ, ପତଙ୍ଗ, ଜଳ, ବାୟୁ ଯେ କେହି ଗୁରୁ ହେବାର

---

* ଭଲ ମନ୍ଦ ଦୁଇ କଥା ବିସ୍ମରି କହିବି,
ଅଜାତି ହୋଇଲେ ତାଙ୍କ ଚରଣ ଧୋଇବି ।
ଗୁରୁର ବଚନ ବାବୁ ପାଷାଣର ଗାର,
ଗୁରୁଙ୍କୁ ହିଁ ସେବା କଲେ ଯମଦଣ୍ଡୁ ପାର ।
ଗୁରୁ ଅକଲ୍ୟାଣେ ବଳା ନର୍କଗତି ପାଇ,
ସପତ ପୁରୁଷ ଯାସ୍ୱେ ଜନମ ହୁଅଇ । ( ଗୋବିନ୍ଦ ଚନ୍ଦ୍ର)

ଯୋଗ୍ୟ, ଯଦି ତାହାଠାରେ କିଛି ଶିକ୍ଷଣୀୟ ବିଷୟ ଥାଏ । ଯଶୋବନ୍ତ ଦାସ ନିଜର ଗୁରୁଙ୍କ ସମ୍ପର୍କରେ "ଆତ୍ମ ପରଚେ ଗୀତା"ରେ ଯେପରି ବର୍ଣ୍ଣନା କରିଛନ୍ତି ତହିଁରୁ ଜଣାଯାଏ ସ୍ୱୟଂ ଜଗନ୍ନାଥ, ଯଶୋବନ୍ତଙ୍କୁ ଦୀକ୍ଷା ଦେଇଥିଲେ ।

ଷୋଡ଼ଶ ଶତାବ୍ଦୀର ସନ୍ଥ କବିଗଣ ଗୁରୁବାଦ ଉପରେ ବିଶ୍ୱାସ ରଖିଥିଲେ । ଯଶୋବନ୍ତ ମଧ୍ୟ ଗୁରୁ ଗ୍ରହଣର ଉପଯୋଗିତା ଅନୁଭବ କରିଛନ୍ତି । † ତେଣୁ ଯଶୋବନ୍ତଙ୍କ ରଚିତ ବିଭିନ୍ନ ପୁସ୍ତକରେ ଏ ସମ୍ପର୍କରେ ବର୍ଣ୍ଣନାମାନ ଦେଖିବାକୁ ମିଳେ । ଯଶୋବନ୍ତ ଶ୍ରୀଜଗନ୍ନାଥଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିବା, ବିଷୟ 'ଆତ୍ମପରଚେ ଗୀତା'ରେ ଉଲ୍ଲେଖ ରହିଛି । ଶ୍ରୀଜଗନ୍ନାଥ, ଯଶୋବନ୍ତଙ୍କ ମଥା ଉପରେ ହାତ ରଖି କାନରେ ଉପଦେଶ ପ୍ରଦାନ କଲେ । ✳ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ସିଦ୍ଧ ଗୁରୁମାନଙ୍କର ନାମୋଲ୍ଲେଖ କରାଯାଇଛି । 'ଷଷ୍ଠୀମେଳା'ର ବର୍ଣ୍ଣନାନୁସାରେ କହ୍ନାଇ ଦାସ, ରାଧାମାଧବ, ଉଦ୍ଧବ, ଗୋପୀନାଥ, ହରିଦାସ, ଗିରିଧାରୀ, ମଧୁଦାସ, ଅର୍ଜୁନ ଦାସ, ଚୈତନ୍ୟ ଦାସ, ମହେଶ୍ୱର ଦାସ, କୁଳ ଖୁଣ୍ଟିଆ, କଣ୍ଟୁରି ଶିଷ୍ୟ ଥିବା ଜଣାଯାଏ । ଏମାନେ ବିଭିନ୍ନ ଜାତିର ଥିଲେ । ବିଶେଷ ଭାବରେ ପତିତ ଜନସାଧାରଣ ସେମାନଙ୍କ ଧର୍ମ ଗ୍ରହଣ କରୁଥିଲେ ।

**ଅଧ୍ୟାତ୍ମିକ ତତ୍ତ୍ୱ** :—କେବଳ ଗୁରୁବାଦ ନୁହେଁ, ଅଧ୍ୟାତ୍ମିକ ତତ୍ତ୍ୱ ସଂପର୍କରେ ବିଭିନ୍ନ ପୁସ୍ତକରେ ବିପୁଳ ଭାବରେ ବର୍ଣ୍ଣନା କରାଯାଇଛି, ଯେଉଁଥିପାଇଁ ପଞ୍ଚସଖାଙ୍କ ରଚିତ ପୁସ୍ତକଗୁଡ଼ିକ ସାହିତ୍ୟ ନ ହୋଇ କେବଳ ଆଧ୍ୟାତ୍ମିକ ତତ୍ତ୍ୱରେ ଭାରାକ୍ରାନ୍ତ ବୋଲି ସମାଲୋଚିତ ହୋଇଥାଏ । ଶୂନ୍ୟ, ଚେତନା, ଭଗବତ ଜ୍ୟୋତି

---

† ଶୁକ୍ଲାମ୍ବର ରୂପ ମୋର ପ୍ରମାଣ, ଶୁକ୍ଳବର୍ଣ୍ଣ ଯହିଁ ନାହିଁ ଅର୍ଜୁନ ।
ଏ ଥାନ ଏ ମୂଢ ପାଇବ ଯେହୁଁ, ଗୁରୁଙ୍କ ଭଣ୍ଡାର ଅଟଇ ସେହୁ ।
ଗୁରୁ ନ ସେବି ଯେ କରନ୍ତି ଜ୍ଞାଣ, ତାହାଙ୍କୁ ସଂସାରେ ବୋଲି ଅଜ୍ଞାନ ।
ଗୁରୁଙ୍କ କୃପା ଯାହାଠାରେ ନାହିଁ, ରୁଦ୍ର ହେଲେ ସେ ପାଇବେ କାହିଁ ।
ଗତି ମୁକତିକ କରତା ଗୁରୁ, ଗୁରୁ ନ ସେବି କେ ସଂସାରୁ ତରୁ ।
ଗୁରୁଙ୍କ ଆଜ୍ଞା ହରିନାମେ ରସ, ଭେଦ କହିଲେ ଯଶୋବନ୍ତ ଦାସ ।
(ଆତ୍ମ ପରଚେ ଗୀତା—ଯଶୋବନ୍ତ)

✳ ଗୋପାଳ ଅଷ୍ଟାଦଶାକ୍ଷର ମନ୍ତ୍ର, ମୋତେ ଦୀକ୍ଷା ଦେଲେ ଶ୍ରୀଜଗନ୍ନାଥ ।
ମଥା ଉପରେ ମୋ ଶ୍ରୀହସ୍ତ ଦେଇଁ, ଉପଦେଶ ଦେଲେ କର୍ଣ୍ଣରେ ନେଇ ।
ଶ୍ରୀ ଜଗନ୍ନାଥ ଯେ ମୋହର ଗୁରୁ, ଏଣୁ ଭରସା ମୋର ମହାମେରୁ ।
( ଆ: ପ: ଗୀତା—ଯଶୋବନ୍ତ )

ଇତ୍ୟାଦିର ଉଦ୍ଭବ ବିଷୟରେ ଯଶୋବନ୍ତଙ୍କ ରଚିତ ପୁସ୍ତକମାନଙ୍କରେ ଉଲ୍ଲେଖ ରହିଛି । କବିଙ୍କ ରଚିତ 'ପ୍ରେମଭକ୍ତି ବ୍ରହ୍ମଗୀତା' ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ବର୍ଣ୍ଣନାର ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ଏଥିରେ ମୁଖ୍ୟତଃ ଜ୍ଞାନମିଶ୍ରା ଭକ୍ତିର ପରାକାଷ୍ଠା ସୂଚିତ ହୋଇଛି । ତଥାପି ଶେଷରେ ପ୍ରେମଭକ୍ତି ବା ଶୁଦ୍ଧାଭକ୍ତି ଉପରେ ଗୁରୁତ୍ୱ ଆରୋପ କରାଯାଇଛି ।

ଗ୍ରନ୍ଥ ରଚନାର ତତ୍କାଳୀନ ନିୟମ ଅନୁଯାୟୀରେ କବି ପ୍ରଥମେ ଗଣେଶ, ସରସ୍ୱତୀ ଜଗନ୍ନାଥ, ଦୁର୍ଗା, ମହାଦେବ ଇତ୍ୟାଦି ଦେବତାମାନଙ୍କୁ ବନ୍ଦନା କରିଛନ୍ତି । ଏହା ପାଞ୍ଚଟି ଅଧ୍ୟାୟରେ ରଚିତ । ପ୍ରଥମ ଅଧ୍ୟାୟରେ କବି ଭଗବାନ୍‌ଙ୍କ ସୃଷ୍ଟି ସଂପର୍କରେ ବର୍ଣ୍ଣନା କରିଛନ୍ତି । ଭଗବାନ୍ ସ୍ୱୟଂ-ସୃଷ୍ଟ ତାଙ୍କୁ କେହି ସୃଷ୍ଟି କରିନାହାନ୍ତି । ସେ ଆଦି ଓ ଅନାଦି । ମହାଶୂନ୍ୟ ମଧ୍ୟ ଭଗବନ୍ତ ଜ୍ୟୋତିରୁ ଉଦ୍ଭବ ଓ ସେ ଜ୍ୟୋତି ମଧ୍ୟ-ମହାଶୂନ୍ୟରେ ପ୍ରକାଶିତ । ସେ ପ୍ରଥମେ ପାଞ୍ଚଟି କଳା ସୃଷ୍ଟି କଲେ । ସେହି ପାଞ୍ଚ କଳା ହେଉଛି, ଉର୍ମି, ଧୁର୍ମି, ଜ୍ୟୋତି, ଜ୍ୱାଳା ଓ ବିନ୍ଦୁ । ଏମାନେ ପ୍ରତ୍ୟେକ ଭିନ୍ନ ଭିନ୍ନ ବର୍ଣ୍ଣ ଧାରଣ କରିଛନ୍ତି । ଉର୍ମି କଳା ଶ୍ୱେତବର୍ଣ୍ଣ ଧୁର୍ମି-ପୀତ ବର୍ଣ୍ଣ, ଜ୍ୟୋତି-ଲୋହିତ, ଜ୍ୱାଳା-କୁଙ୍କୁମ, ଓ ବିନ୍ଦୁ ଶ୍ୟାମବର୍ଣ୍ଣ ଅଟନ୍ତି । ଏହା ପାଞ୍ଚ କଳା ପୁଣି ଋକ୍, ଯଜୁ, ସାମ, ଅଥର୍ବ ଓ ଶିଶୁ ଇତ୍ୟାଦି ପାଞ୍ଚ ବେଦର ମୂଳ ସ୍ୱରୂପ ଏବଂ ମନ, ସୁମନ, କୁମନ, ବିମନ, ଅମନର ସୃଷ୍ଟ ଅବସ୍ଥା । ଏହି ପାଞ୍ଚକଳାଯୁକ୍ତ ପ୍ରକୃତି ହେଉଛି ଚିତ୍ ବା ଅଚିନ୍ମୟ । ପାଞ୍ଚକଳା ଅନନ୍ତ ଜଳାର୍ଣ୍ଣବରେ ପଡ଼ନ୍ତେ ତହିଁରୁ ଯୋଗ-ମାୟା ବା ଆଦ୍ୟାଶକ୍ତି ସୃଷ୍ଟି ହେଲେ । ସେ ସୃଷ୍ଟିର ଆଦ୍ୟ ସ୍ୱରୂପିଣୀ ଭଗବତ୍ ଲୀଳାର ପ୍ରଥମ କର୍ତ୍ତ୍ରୀ । ଆଦ୍ୟାଶକ୍ତି ହେଉଛନ୍ତି ଅର୍ଦ୍ଧମାତ୍ରା । ଯେଉଁ ଜଳରୁ ଯୋଗମାୟା ଜାତ ହେଲେ ତାହା ହେଉଛି କାରଣାର୍ଣ୍ଣବ ଏଠାରେ କାଳରୂପୀ କମଳ ସ୍ଥିର ଭାବରେ ରହି ପାରିଲେ ନାହିଁ । ତେଣୁ ଯୋଗମାୟା ନିଜ ଅଙ୍ଗରୁ ଓଁକାର ଜାତ କଲେ । ଓଁ ର ଉପରି ଭାଗକୁ ନାସୀ କୁହାଯାଏ । ଏହା ଅର୍ଦ୍ଧ ମାତ୍ରା ବା ଯୋଗମାୟା ସହିତ ସଂଯୁକ୍ତ ଏବଂ ଏହା ବଜ୍ର ଲୀଳା ନାମରେ ଅଭିହିତ । ବଜ୍ର ଲୀଳା ଜ୍ୟୋତିର୍ଲିଙ୍ଗ ନାମରେ ଅଭିହିତ । ଏହାର ଅର୍ଥ ଶିବ ବା ମଙ୍ଗଳ ଏବଂ ଏହାର ବୀଜ ହେଉଛି ହ୍ରୀଁ ବୀଜ । ସେହି ଜ୍ୟୋତିର୍ଲିଙ୍ଗ ଓ ଅର୍ଦ୍ଧମାତ୍ରାର ସଂଯୋଗରେ ସୃଷ୍ଟିର ଉତ୍ପତ୍ତି ହୋଇଛି । ଜ୍ୟୋତିର୍ଲିଙ୍ଗଙ୍କର ଅନ୍ୟନାମ ବଜ୍ରଲୀଳା । ଏତଦ୍ ବ୍ୟତୀତ ଏହାଙ୍କର ଅନ୍ୟାନ୍ୟ କେତେକ ନାମ ମଧ୍ୟ ରହିଛି । ବିଭିନ୍ନ ସ୍ଥଳରେ ଜ୍ୟୋତିର୍ଲିଙ୍ଗ ବିରାଟ, ଅନନ୍ତ, ଶେଷ, ବଳଭଦ୍ର ନାମରେ ଅଭିହିତ । ଯୋଗମାୟା ହେଉଛନ୍ତି ଆଦି ଶକ୍ତି ବା ଆଦି ପ୍ରକୃତି ଏବଂ ଜ୍ୟୋତିର୍ଲିଙ୍ଗ ହେଉଛନ୍ତି ଆଦି ପୁରୁଷ ଯୋଗମାୟାଙ୍କ ନିଜ ଅଙ୍ଗରୁ ଓଁକାରର ସୃଷ୍ଟି । ଅର୍ଦ୍ଧମାତ୍ରା ଉପରେ ବିନ୍ଦୁର ଯୋଗ ହିଁ ଓଁକାର ବା ପ୍ରଣବ । ଭଗବାନ୍ ପ୍ରକୃତିକୁ ସୃଷ୍ଟି କଲେ । କିନ୍ତୁ ନିଜେ ଅପ୍ରକଟ ରହିଲେ । ବିନ୍ଦୁରେ ଆପଣାର ଓ ଅଣାକ୍ଷର ବ୍ରହ୍ମଙ୍କର ସ୍ଥିତି । ସର୍ପାକୃତି ଧାରଣ କରିଥିବା ଅନନ୍ତ ତହିଁରୁ ସୃଷ୍ଟ । ସେହି ଅନନ୍ତଙ୍କର ଅନ୍ୟ ନାମ ସୁଷୁମ୍ନା । ମନୁଷ୍ୟ ସୁଷୁମ୍ନା

ନାଡ଼ିରେ ଧ୍ୟାନ କଲେ ନିର୍ବେଦ ଲାଭ କରେ । ଏହି ନିର୍ବେଦ ହେଉଛି ଶିଶୁବେଦ ବା ନିର୍ଗୁଣ୍ୟ । † ପ୍ରଥମ ଅଧ୍ୟାୟରେ ଓଁକାର, ଏକାକ୍ଷର, ପ୍ରକୃତି ପୁରୁଷ ଇତ୍ୟାଦି ସୃଷ୍ଟି ରହସ୍ୟ ବର୍ଣ୍ଣିତ ।

ଦ୍ୱିତୀୟ ଅଧ୍ୟାୟରେ ରାଧାକୃଷ୍ଣ ତତ୍ତ୍ୱ ବର୍ଣ୍ଣନା କରାଯାଇଛି । ମହାମାୟାଙ୍କଠାରେ ଭଗବାନ୍ ନିଜ କଳା ପ୍ରବେଶ କରାଇଲେ । ଏ ବିଷୟରେ ଏପରି ଉଲ୍ଲେଖ କରାଯାଇଛି— ଯୋଗମାୟା ଶୂନ୍ୟକୁ ଦୃଷ୍ଟି ନିକ୍ଷେପ କଲେ ଓ ପ୍ରଥମେ ଜ୍ୟୋତି ତା'ପରେ ଅଗ୍ନି, ତା' ପରେ ଧୂମ ଓ ସବୁ ଉପରେ ବିନ୍ଦୁ ଦେଖିବାକୁ ପାଇଲେ । ଯେଉଁଠାରେ ହିଁ ଶୂନ୍ୟ ବ୍ରହ୍ମ ଅଧିଷ୍ଠିତ । ସେହି ଶୂନ୍ୟରୁ, ଘର୍ମ ଧୂର୍ମ, ଜ୍ୟୋତି ଓ ଜ୍ୱାଳା ସହିତ ମହାରସ କ୍ଷରିତ ହେଲା ଏବଂ ମହାମାୟା ତାହାକୁ ଦୁଇ ହାତରେ ପାନ କରି ଗର୍ଭବତୀ ହେଲେ । ବାମଭାଗ ସ୍ତ୍ରୀ ଓ ଦକ୍ଷିଣ ଭାଗ ପୁରୁଷ ଭାବରେ ସୃଷ୍ଟି ହେଲା । ଭଗବାନ୍ ସ୍ୱକଳାକୁ ଯୋଗମାୟାଠାରେ ପ୍ରବେଶ କରାଇବା ବିଷୟ ଯେପରି ବର୍ଣ୍ଣିତ, ତାହାହିଁ ଜୀବ ଓ ପରମ ଦୁଇଟି ମୂର୍ତ୍ତି ଧାରଣ କଲା । ସେମାନେ ହେଲେ ରାଧା ଓ କୃଷ୍ଣ । ସେହି ଯୁଗଳାଙ୍କ ଧାରଣ କରିଥିବା ଶିଶୁ ମୂର୍ତ୍ତିଟି ଭୂମିରେ ପ୍ରାଣହୀନ ଅବସ୍ଥାରେ ପତିତ ହେଲା । ପୁଣି ଯୋଗମାୟା ଭଗବାନ୍‌ଙ୍କ ସହିତ ଆତ୍ମିକ ଯୁକ୍ତ ହୋଇ ଲୀଳା ଅଭିଳାଷ କଲେ ଓ ଅଭିଳାଷ ପୂର୍ଣ୍ଣ ହେଲା । ପିଣ୍ଡରେ ଶକ୍ତି ସଞ୍ଚାର ହେଲା । ସେହି ଯୁଗଳ ମୂର୍ତ୍ତି ରାଧାକୃଷ୍ଣ ବୋଲାଇଲେ । ତାଙ୍କଠାରେ ଷୋଳ ଶକ୍ତି ବିଦ୍ୟମାନ । ପୁଣି ହଂସ ଓ ପରମହଂସ ଅର୍ଥାତ ଜୀବ ପରମ ମଧ୍ୟ ବିରାଜମାନ । କୃଷ୍ଣ କଳା ଓ ରାଧା ଗୌରକାନ୍ତି କାହିଁକି ହେଲେ ଏ ବିଷୟରେ ରାଧା କୃଷ୍ଣଙ୍କୁ ଜିଜ୍ଞାସା କରିଛନ୍ତି । ଏହାର ଉତ୍ତରରେ ସେ କହିଛନ୍ତି ଯେ 'ମ' ବା ପରଂବ୍ରହ୍ମ କୃଷ୍ଣ ବିନ୍ଦୁରୁ ଜାତ । ତେଣୁ ବର୍ଣ୍ଣ ଶ୍ୟାମ, ର ବା ରାଧା ସ୍ୱର କଳାରୁ ଜାତ ଏବଂ ଏହାର ବର୍ଣ୍ଣ ଶ୍ୱେତ । ଜୀବ ପରମ ସମାଧିସ୍ଥ ହେଲାବେଳେ ଲୀଳା ଶୂନ୍ୟ (ମରା) ଅବସ୍ଥାରେ ବିଦ୍ୟମାନ । ସେମାନଙ୍କଠାରେ ଲୀଳାର ବାସନା ଜାଗ୍ରତ ହେଲେ ସେମାନେ ଲୀଳାମୟ [ରାମ] ନାମରେ ପରିଚିତ ହୁଅନ୍ତି । ଲୀଳାମୟ ଅବସ୍ଥାର ମହତ୍ତ୍ୱ ଯେଉଁମାନେ ଉପଲବ୍‌ଧ କରନ୍ତି ସେମାନେ ପାପ ମୁକ୍ତ ଓ ମୁକ୍ତିର ଅଧିକାରୀ ହୋଇ ପାରନ୍ତି । ରାଧା ନିଜ ଅଙ୍ଗର ବର୍ଣ୍ଣ ରହସ୍ୟ ଓ ଜୀବ ପରମ ତତ୍ତ୍ୱ ଜାଣିବା ପରେ ପୁଣି ଜଗତରେ ରାଧାଙ୍କ

† ସେ ବିନ୍ଦୁ ଯୋଗମାୟା ପରେ, ରହିଲେ ଅର୍ଦ୍ଧ ମାତ୍ରା ଶିରେ ।
ଶେଷେ ଓଁକାର ବୋଲାଇଲେ, ବେଦରେ ପ୍ରଣବ ହୋଇଲେ ।
ଯାହାକୁ ଅଣାକାର କହି, ସେ ବିନ୍ଦୁ ବ୍ରହ୍ମ ଅଟୁ ବହି ।
ତହୁଁ ଜନ୍ମିଲା ଏକାକ୍ଷର, ଅନନ୍ତ ସର୍ପର ଆକାର ।
ତାହାକୁ ସୁଷୁମ୍ନା କହି, ସେ ଶିଶୁବେଦ ଘର ସେହି ।
(ପ୍ରେମ ଭକ୍ତି ବ୍ରହ୍ମଗୀତା—୧ମ ଅଧ୍ୟାୟ—ପୃ-୬)

ସୃଷ୍ଟି ରହସ୍ୟ ଜାଣିବାକୁ ଇଚ୍ଛା କରିଛନ୍ତି । କୃଷ୍ଣ ଏହାର ଉତ୍ତରରେ କହିଛନ୍ତି ଯେ ସତ୍ୟ ସ୍ଥଳରେ ଭଗବାନ୍‌ଙ୍କ ଶ୍ରମ ଝାଳରୁ ଏକ କନ୍ୟା ଜାତ ହେଲା । ସେ ଲୀଳା କନ୍ୟା ଭାବରେ ପରିଚିତ ହେଲେ । ସେହି କନ୍ୟା ବିଷ୍ଣୁଙ୍କୁ ପତିରୂପେ ପାଇବା ପାଇଁ କାମନା କରି ବ୍ରହ୍ମାଙ୍କ ଗୃହରେ ରହିଲେ ଓ ପ୍ରତ୍ୟେକ ଦିନ ଅଭିପ୍ରାୟ ସିଦ୍ଧାର୍ଥେ ଗଙ୍ଗା କୂଳରେ ବାଲୁକା ପୂଜା କଲେ । ଥରେ ଜଣେ ଋଷି ତାଙ୍କ ରୂପରେ ମୁଗ୍ଧ ହୋଇ ବିବାହ କରିବାକୁ ଇଚ୍ଛା କରିବାରୁ କନ୍ୟା କ୍ରୋଧାନ୍ୱିତ ହୋଇ ଋଷିଙ୍କୁ ନଂପୁଂସକ ହେବାକୁ ଅଭିଶାପ ଦେଲେ । * ମାତ୍ର ଋଷି ମଧ୍ୟ ଲୀଳାକନ୍ୟାଙ୍କୁ ପ୍ରାପ୍ତ ହେବା ନିମନ୍ତେ ଭଗବାନ୍‌ଙ୍କୁ ପ୍ରାର୍ଥନା କଲେ । ତାଙ୍କର କାମନା ଚରିତାର୍ଥ କରିବା ନିମନ୍ତେ ଭଗବାନ ତାଙ୍କୁ ଦ୍ୱାପର ଯୁଗରେ ଚନ୍ଦ୍ରସେଣା କରି ଜନ୍ମ ଦେଲେ । ଲୀଳା କନ୍ୟାଙ୍କ ଅଭିଶାପ ଯୋଗୁ ସେ ନଂପୁଂସକ ହୋଇ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କଲେ ଏବଂ ଭଗବାନଙ୍କ ବର ଦାନ ଯୋଗୁଁ ସେ ରାଧିକାଙ୍କୁ ପତ୍ନୀ ଭାବରେ ପାଇଲେ । ବ୍ରହ୍ମା ଲୀଳା କନ୍ୟାଙ୍କୁ ଶିଶୁର ସ୍ୱରୂପ ଦେଲେ ଓ କାଳିନ୍ଦୀର ପଦ୍ମ ବନରେ ଅବସ୍ଥାପିତ କଲେ । ବୃଷଭାନୁ ସେଠାରୁ ଆଣି କନ୍ୟା ଭାବରେ ଲାଳନ ପାଳନ କଲେ । ଦ୍ୱିତୀୟ ଅଧ୍ୟାୟରେ ରାଧା ଓ କୃଷ୍ଣଙ୍କ ମଧ୍ୟରେ କଥୋପକଥନ ଛଳରେ ରାଧାଙ୍କର ଜନ୍ମ ରହସ୍ୟ ପ୍ରକଟିତ ହୋଇଛି ।

ତୃତୀୟ ଅଧ୍ୟାୟରେ ତ୍ରିପୁରା ଜନ୍ମ ଓ ତ୍ରିଦେବଙ୍କର କଥା ବର୍ଣ୍ଣିତ । ରାଧାକୃଷ୍ଣ ପ୍ରେମମୟ ମୂର୍ତ୍ତି ଧାରଣ କରିଛନ୍ତି । ସେମାନଙ୍କର ପ୍ରେମରସ ଉଚ୍ଛୁଳି ପଡ଼ିବାରୁ ତହିଁରୁ ମୂର୍ତ୍ତିମନ୍ତ ରୂପ ଧାରଣ କରି ପ୍ରେମରୂପା ସୃଷ୍ଟି ହେଲେ । ସେ ଭଗବାନ୍‌ଙ୍କ କଳନା ପ୍ରସୂତ ହୋଇଥିବାରୁ ତାହାଙ୍କର ନାମ କଳନାମୟୀ କାଳିନ୍ଦୀ ହେଲା । ସେହି ପ୍ରେମରୂପାଙ୍କ ଗର୍ଭରୁ ତ୍ରିପୁରା ଜାତ ହେଲେ । ତାହାଙ୍କର ନାମ ତ୍ରିପୁରା ହେବାର ତାତ୍ପର୍ଯ୍ୟ ହେଉଛି ଯେ ସତ୍ତ୍ୱ, ରଜ, ତମ ଏପରି ତ୍ରିଗୁଣର ଅଧିନାୟିକା ଏବଂ ସେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିପୁରରେ ଏକ ରୂପ ଅଟନ୍ତି । ପ୍ରେମ ଲୀଳା ଜଗତରେ ପ୍ରକଟିତ ହେବାର ଏହା ହେଉଛି ପ୍ରଥମ ସୂତ୍ରପାତ । ତ୍ରିପୁରାଙ୍କ ସ୍ୱଭାବରୁ କେହି ମୁକ୍ତ ନୁହନ୍ତି । ତଦନନ୍ତର ଓ ଦଶବିଧ ତାଙ୍କ ଇଙ୍ଗିତରେ

---

* ସେ ଗଙ୍ଗା ତୀରେ ଥାନ୍ତି ନିତ, ସେ ସତ୍ୟ ଋଷି ବ୍ରହ୍ମ ସୁତ
ଦେଖିଲେ ଲୀଳକନ୍ୟା ମୁଖ, ରୂପେ ସେ ମୋହୁଛି ତ୍ରୈଲୋକ୍ୟ ।
ତାହାଙ୍କୁ ମୁନି ପୃଚ୍ଛା କରି, ଆମ୍ଭକୁ ପାରିବ କି ବରି ?
ତା ଶୁଣି କନ୍ୟା କୋପ କଲା ତାଙ୍କୁ ଅମେଣ୍ଟ ଶାପ ଦେଲା ।
ମୁଁ ସ୍ଥିର ବିଷ୍ଣୁ ଅଭିଳେଷୀ, ତୁ ପୁଣ ହୁଅ ନଂପୁଂସକ ।

(ପ୍ରେ. ଭ. ବ୍ର. ଗୀତା-୧ମ ଅଧ୍ୟାୟ)

ପରିଚାଳିତ । ଯୋଗମାୟାଙ୍କ ଆଦେଶରେ ନିପୁର, ଯୁଗଳ ମୂର୍ତ୍ତିଙ୍କ ସେବାରେ ନିଯୁକ୍ତ । ନିତ୍ୟ ସ୍ଥଳୀରେ ହେଉଥିବା ରାସଲୀଳାରେ ନିପୁରଙ୍କ ସ୍ଥାନ ରହିଛି । ଏହି ତତ୍ତ୍ୱର ବର୍ଣ୍ଣନା ଓଡ଼ିଆ ସନ୍ଥ ସାହିତ୍ୟମାନଙ୍କରେ ହୋଇଛି । ଶିବ ଦାସଙ୍କ 'ରାଧା ରସାମୃତ ଗୀତା' ଦିବାକର ଦାସଙ୍କର 'ଜଗନ୍ନାଥ ଚରିତାମୃତ', ବଳରାମ ଦାସଙ୍କ 'ବେଦାନ୍ତ ସାର ଗୁପ୍ତ ଗୀତା'ରେ ଅନୁରୂପ ବର୍ଣ୍ଣନା ପରିଲକ୍ଷିତ ହୁଏ । ନିତ୍ୟ ସ୍ଥଳରେ ହେଉଥିବା ଜୀବପରମଙ୍କ ରାସ ଲୀଳାର ଅନ୍ୟ ନାମ ରାମନାମ । ଜୀବ ପରମଙ୍କ ଉପରେ ଅଣାକ୍ଷର, ତତ୍ପରେ ନିରାକାର ଓ ନିରାକାରଙ୍କ ଉପରେ ରହିଛି ମହାଶୂନ୍ୟ । ରାମ ନାମ ଏହି ମହାଶୂନ୍ୟରୁ କ୍ଷରିତ । ତାହା ପୁଣି ବ୍ରହ୍ମକଳାର ମୂଳ ସ୍ଥାନ । ଭଗବାନ୍‌ଙ୍କ ହୁଂକାରରୁ ଓଁକାର ଜାତ । ଏଥିରେ ଜଣାଯାଏ ଯେ ନିଶବ୍ଦର ଶବ୍ଦ ଓ ଶବ୍ଦରୁ ଓଁକାର ସୃଷ୍ଟି । ଓଁ ହେଉଛି ଏକାକ୍ଷର । ଏଥିରୁ ବେନି ଅକ୍ଷର ରାମ ଓ ତହିଁରୁ ନିତତ୍ତ୍ୱ ଉତ୍ପନ୍ନ ହେଲା । ରାମ ବେନି ଅକ୍ଷରରେ ରାଧା ଓ କୃଷ୍ଣ ଏବଂ ନିତତ୍ତ୍ୱରେ ହରେ ରାମ କୃଷ୍ଣବିହିତ ରହିଛି । ଏହି ନିତତ୍ତ୍ୱକୁ ପୁଣି ବିଭିନ୍ନ ରୂପରେ ଉପଲବ୍ଧ କରାଯାଇପାରେ । ଏହି ନିତତ୍ତ୍ୱକୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, କିମ୍ବା କୃଷ୍ଣ, ରାଧା, ଚନ୍ଦ୍ରାବଳୀ କିମ୍ବା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କିମ୍ବା ଗୁରୁ, ଶିଷ୍ୟ, ଭଗବାନ୍ ଭାବରେ ଆରୋପ କରାଯାଇ ପାରେ । ଏହା ପୁଣି ହ୍ରୀଁ, କ୍ଲୀଁ, ଶ୍ରୀଁ ଓ ପରା, ରମା କାମବୀଜ ମଧ୍ୟ ହୋଇ ପାରନ୍ତି । ଏହିପରି ଭାବରେ ନିତତ୍ତ୍ୱକୁ ବିଭିନ୍ନ ରୂପରେ ପରିକଳ୍ପନା କରାଯାଇ ପାରେ । ନିତତ୍ତ୍ୱକୁ ବିଭିନ୍ନ ରୂପରେ ପରିକଳ୍ପନା କରାଯାଇପାରେ । ନିତତ୍ତ୍ୱରୁ ଚାରି ବୀଜ ଚାରି ନାମ ଉଦ୍‌ଭୂତ ହେଲା । ଅର୍ଥାତ ଏହି ଅଷ୍ଟ ଅକ୍ଷରରୁ ହରେ ରାମ କୃଷ୍ଣ ହରେ (ଶ୍ୟାମ) ଉତ୍ପନ୍ନ । ଏହି ଅଷ୍ଟ ଅକ୍ଷରରୁ ପୁଣି ଷୋଳ ଅକ୍ଷର ଅର୍ଥାତ୍ ହରେ ରାମ ହରେ ରାମ ରାମ ରାମ ହରେ ହରେ ଜାତ ହେଲା । ତହିଁରେ ପୁଣି ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ" ଏହି ଷୋଳ ଅକ୍ଷରର ମିଶି ଷୋଳ ନାମ ବା ବତିଶି ଅକ୍ଷର ଜାତ ହେଲା । ଏହି ଅଧ୍ୟାୟରେ କବି ପୁଣି ପ୍ରେମ ଭକ୍ତି ଓ ରାଧାଭାବର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ପରବର୍ତ୍ତୀ ଅଧ୍ୟାୟରେ କବି ସପ୍ତାବରଣ ତତ୍ତ୍ୱର ମହତ୍ତ୍ୱ ବୁଝାଇଛନ୍ତି । ନିତ୍ୟ ସ୍ଥଳୀର ଚାରି ପାଖକୁ ସାତ ବେଢ଼ ଘେରି ରହିଅଛି । ପ୍ରଥମ ଆବରଣରେ ଗୋପୀ, ଦ୍ୱିତୀୟ ଆବରଣରେ ସୁଦାମା ଇତ୍ୟାଦି ଗୋପାଳ ଗଣ, ତୃତୀୟରେ ଗୋପ ଓ ଗୋପୀମାନେ, ଚତୁର୍ଥରେ ଗୋପୀ ଓ ଧେନୁ ଗଣ, ପଞ୍ଚମରେ ପାରିଜାତ ଇତ୍ୟାଦି ବୃକ୍ଷ ଓ ଦେବତାଗଣ, ଷଷ୍ଠରେ ଗନ୍ଧର୍ବ ଏବଂ ସପ୍ତମରେ ଚତୁର୍ଭୁଜ ବିଷ୍ଣୁ ବିଦ୍ୟମାନ । ଏହାପରେ ରହିଛି ନିତ୍ୟ ସ୍ଥଳୀ ଯେଉଁଠାରେ କି ରାଧାକୃଷ୍ଣଙ୍କର ନିତ୍ୟ ଲୀଳା ଚାଲିଅଛି । ପୁଣି କବି ମହାଶୂନ୍ୟରୁ କିପରି ଗଗନ ଜାତ ହେଲା ଏବଂ ଭଗବାନ୍ ପ୍ରକାଶିତ ହେଲେ ଓ ତହିଁରୁ ପୁଣି ଜଳ ସୃଷ୍ଟି ହେଲା । ପୁନଶ୍ଚ କବି ଗୋକୁଳବାସୀ ଆଦି ପୁରୁଷଙ୍କ ଅଙ୍ଗରୁ କିପରି ପ୍ରକୃତି

ଜାତ ହେଲ ଏବଂ ସେ ଦୁହେଁ କପର କୃଷ୍ଣ ରାଧା ନାମ ଧାରଣ କଲେ । ସେ ଦୁହିଁଙ୍କଠାରୁ କପର ବସନ୍ତ ଓ ବସନ୍ତଙ୍କଠାରୁ ଜୀବ ବା ଚନ୍ଦ୍ରାବଳୀ ସୃଷ୍ଟି ହେଲେ ତାହାର ଉଲ୍ଲେଖ କରଛନ୍ତି । କବ ରାଧାକୃଷ୍ଣ ଓ ଚନ୍ଦ୍ରାବଳୀଙ୍କର ଷଡ଼ କୋଣରେ ବୃନ୍ଦାବତୀ, ରଙ୍ଗଦେବୀ, ଋତୁରେଖା, ଲୀଳାବତୀ, ସୁଭଦ୍ରା, ପ୍ରିୟାବତୀ ସଖୀ ଅବସ୍ଥିତ ବୋଲି ବ୍ୟକ୍ତ କରଛନ୍ତି । ଏମାନେ ସମସ୍ତେ ଶ୍ରୀକୃଷ୍ଣଙ୍କର ଶରୀର ସ୍ୱରୂପ ଓ ହରେ ରାମ କୃଷ୍ଣ ଏହ ଦ୍ୱ ନାମ ବା ଷଡ଼ ଅକ୍ଷରରୁ ଜାତ । ଅଷ୍ଟପାଟବଣୀ ହରେ କୃଷ୍ଣ ହରେ ରାମ ରୂପ ନାମ ବା ଅଷ୍ଟ ଅକ୍ଷରେ ରୂପକ ପ୍ରକାଶ । ଏହ ଅଷ୍ଟପାଟବଣୀ ହେଲେ— ଲଳିତା, ବମଳା, ଶ୍ରୀରାଧା, ଶ୍ରୀମତୀ, ହରପ୍ରିୟା, ସୁକେଶୀ, ସଚଲା ଓ ପଦ୍ମା । ଅଷ୍ଟସଖୀଙ୍କ ପରେ କବ ଷୋଳ ଗୋପୀଙ୍କ ବିଷୟ ବର୍ଣ୍ଣନା କରଛନ୍ତି ଓ ପ୍ରତ୍ୟେକଙ୍କର ନାମୋଲ୍ଲେଖ ମଧ୍ୟ କରଛନ୍ତି । ଏମାନେ ପୁଣି ବତଶି ଅକ୍ଷର ଓ ଗାୟତ୍ରୀ ଇତ୍ୟାଦ ଚଉଷଠି ଭାଗରେ ପରଣତ ହୋଇଛନ୍ତି । ଏଥିରୁ ଚାର ବେଦ, ତନଗୁଣ ପଞ୍ଚଅକ୍ଷର ଓ ପଞ୍ଚଭୂତ ଇତ୍ୟାଦର ସୃଷ୍ଟି । ଏହ ଅଧ୍ୟାୟରେ ପୁଣି କବ ଇଡ଼ା, ପିଙ୍ଗଳା, ସୁଷୁମ୍ନା ଇତ୍ୟାଦ ନାଡ଼ରେ ବାୟୁର ସଂଚାର ଏବଂ ଷଡ଼ଚକ୍ରରେ ବ୍ରହ୍ମା ବିଷ୍ଣୁ ଆଦଙ୍କର ଅବସ୍ଥିତ ସଂପର୍କରେ ବର୍ଣ୍ଣନା କରଛନ୍ତି । †

ପୁସ୍ତକର ଶେଷ ଅଧ୍ୟାୟରେ ପୁରୁଷୋତ୍ତମ କ୍ଷେତ୍ରର ମହାତ୍ମ୍ୟ ପ୍ରତପାଦତ ହୋଇଛୁ । ଅର୍ଜୁନ ତିଲୋକ ମଧ୍ୟରେ ଦୁର୍ଲଭ ସ୍ଥାନ ଦର୍ଶନ କରବା ପାଇଁ ଶ୍ରୀକୃଷ୍ଣଙ୍କ ପାଖରେ ନଜର ଇଚ୍ଛା ପ୍ରକାଶ କରଛନ୍ତି ଏବଂ ଶ୍ରୀକୃଷ୍ଣ ପୁରୁଷୋତ୍ତମ କ୍ଷେତ୍ର ଦର୍ଶନ କରାଇ ଅର୍ଜୁନଙ୍କର ଅଭିଳାଷ ପୂରଣ କରଛନ୍ତି । ଶ୍ରୀ କ୍ଷେତ୍ରର ଗରୁଡ଼ ସ୍ତମ୍ଭ ବାଇଶି ପାବଚ୍ଛଠାରୁ ଆରମ୍ଭ କର ଦେବ ନାଶନ ବଟ, ଲକ୍ଷ୍ମୀଙ୍କ ଭୋଗ ଘର, ବଟ ମଙ୍ଗଳା, ମୁକ୍ତି ମଣ୍ଡପ, ରୋହଣୀ କୁଣ୍ଡ ଓ ମନ୍ଦର ବେଢ଼ାରେ ଥିବା ସମସ୍ତ ଦେବାଦେବୀଙ୍କ ବର୍ଣ୍ଣନା କରଛନ୍ତି ଏବଂ ପୁରୁଷୋତ୍ତମ କ୍ଷେତ୍ର ଯେ ତିଲୋକ ମଧ୍ୟରେ ଦୁର୍ଲଭ ଏବଂ ଗୋପ, ମଥୁରା, ବୃନ୍ଦାବନ, ଦ୍ୱାରକା ଇତ୍ୟାଦ ସକଳ ତୀର୍ଥ ମଧ୍ୟରେ ଶ୍ରେଷ୍ଠ ଏହ ମତ ସେ ସେମାନେ ବ୍ୟକ୍ତ

---

† ପୁଣି ଯେ ଛଡ଼ଚକ୍ର ହୋଇ ମୂଳ କମଳ ଲିଙ୍ଗ ଦୁଇ
ନାଭି କମଳ ହୃଦ ପୁଣି କଣ୍ଠ ଲଲାଟ ଛଡ଼ ଜାଣ
ବ୍ରହ୍ମା ଯେ ବସିଲେ ନାଭିରେ ବିଷ୍ଣୁ ରହିଲେ ହୃଦୟରେ
କଣ୍ଠେ ରହିଲେ ସଦାଶିବ ଲଲାଟେ ନିରଞ୍ଜନ ଦେବ ।
କୃଷ୍ଣ ଅଂଶରୁ କାମ ଜାଣ ରହିଲେ ଲିଙ୍ଗଚକ୍ରେ ପୁଣ
ରୁଦ୍ରର ଅଂଶରୁ ପ୍ରକାଶ ମୂଳ କମଳେ ସେ ଗଣେଶ ।

(ପ୍ରେ. ଭ. ବ୍ର. ଗୀତ-୧ମ ଅଧ୍ୟାୟ)

କରିଛନ୍ତି । * କେବଳ ଯଶୋବନ୍ତ ଦାସ ନୁହନ୍ତି, ଅନ୍ୟାନ୍ୟ ସାରସ୍ୱତ ପୁରୁଷ ଓ ଆଧ୍ୟାତ୍ମିକ ପୁରୁଷଗଣ ମଧ୍ୟ ଶ୍ରୀ କ୍ଷେତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ ଏବଂ ଦିବାକର ଦାସ, ଭୂପତି ପଣ୍ଡିତ ଇତ୍ୟାଦି ସନ୍ଥ କବିଗଣ ଓ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଆଦି ସାରସ୍ୱତ ପୁରୁଷଗଣ ସ୍ୱ ସ୍ୱ ପୁସ୍ତକରେ ଶ୍ରୀ କ୍ଷେତ୍ରର ମହିମା ପ୍ରତିପାଦନ କରିଛନ୍ତି ।

ସାମଗ୍ରିକ ଆଲୋଚନାରୁ ଜଣାଯାଏ ଏହା କେବଳ ବୈଷ୍ଣବୀୟ ତତ୍ତ୍ୱରେ ପରିପୂର୍ଣ୍ଣ । ସାହିତ୍ୟିକ ମୂଲ୍ୟ ବିଚାର କରିବାବେଳେ ନିରାଶ ହେବାକୁ ପଡ଼େ । ପଞ୍ଚମ ଅଧ୍ୟାୟରେ ଶ୍ରୀ କ୍ଷେତ୍ରର ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କର ସହଜ ସରଳ ପ୍ରକାଶ ଭଙ୍ଗୀର କିଛି ସୂଚନା ମିଳୁଥିଲେ ହେଁ ତାହା ଏ ପୁସ୍ତକର ମାନଦଣ୍ଡ ନୁହେଁ ।

'ପ୍ରେମଭକ୍ତି ବ୍ରହ୍ମ ଗୀତା' ପରି "ଯଶୋବନ୍ତ ଗୋସାଇଁଙ୍କ ମନ୍ତ୍ରବୋଲି" ମଧ୍ୟ ବ୍ରହ୍ମଜ୍ଞାନ ସମ୍ବନ୍ଧୀ ଏକ ତାତ୍ତ୍ୱିକ ରଚନା । ଯଶୋବନ୍ତ ଦାସ ଓ ତାଙ୍କ ଶିଷ୍ୟ ଲୋଇଙ୍କ ମଧ୍ୟରେ ହୋଇଥିବା କଥୋପକଥନ ହେଉଛି ଏ ପୁସ୍ତକର ବିଷୟବସ୍ତୁ । ମନେହୁଏ ବ୍ରହ୍ମଜ୍ଞାନ ସମ୍ବନ୍ଧରେ ଜିଜ୍ଞାସୁ ଶିଷ୍ୟ ଗୁରୁଙ୍କୁ ପ୍ରଶ୍ନ କରିଛନ୍ତି ଓ ଗୁରୁ ଶିଷ୍ୟକୁ ସେହି ଗୂଢ଼ ତତ୍ତ୍ୱ ଗୁଡ଼ିକ ଅବଗତ କରାଇଛନ୍ତି । 'ପ୍ରେମଭକ୍ତି ବ୍ରହ୍ମ ଗୀତା'ରେ ବର୍ଣ୍ଣିତ ତତ୍ତ୍ୱ ତୁଲ୍ୟ ଏଥିରେ ତନ ନାମ, ତନ ତତ୍ତ୍ୱ, ଯୋଗମାୟା ଇତ୍ୟାଦିଙ୍କର ବର୍ଣ୍ଣନା ରହିଛି । ପୁନଶ୍ଚ ଭାରତୀୟ ବୈଷ୍ଣବ ଧର୍ମର ମୁଖ୍ୟ ଗୁରୁଜଣ ଆଦ୍ୟର୍ଯ୍ୟ ଓ ଓଡ଼ିଶାର ଗୁରୁଜଣ ବିଶିଷ୍ଟ ମହାନ୍ତଙ୍କର ଭଜନ ମାର୍ଗ ସମ୍ପର୍କରେ ଆଲୋଚନା ହୋଇଛି । ଆଲୋଚିତ ବିଷୟ ବର୍ଣ୍ଣନାରୁ ଗୁରୁ ମଠ ଓ ଗୁରୁ ମହାନ୍ତ ଏବଂ ସେହି ମହାନ୍ତଙ୍କ ଭଜନ ପଦ୍ଧତି ଜାଣିବାର ସୁଯୋଗ ମିଳେ । † ପୁଣି ପାଞ୍ଚ

---

* ସେ ତନ ଦଣ୍ଡେ ଯେତେଦୂର, ଯମର ନାହିଁ ଅଧିକାର ।
ପରମ ବଇକୁଣ୍ଠ ସେହି, କ୍ଷେତ୍ରମାନଙ୍କ ରାଜା କହି ।
( ପ୍ରେ. ଭ. ବ୍ର. ଗୀ—୫ମ ଅଧ୍ୟାୟ )

† ନନ୍ଦ ସେ ସତ ଅନନ୍ତ ପ୍ରଧାନ, ଚୈତନ୍ୟର ଚେତା ତହିଁ ପ୍ରମାଣ ।
ସ୍ୱରୂପ ପଥଟି ଅଚ୍ୟୁତ କହିଂ, ପ୍ରକାଶ ପଥ ଯଶୋବନ୍ତ ହୋଇଂ ।
ଓଡ଼ିଶା ସ୍ଥଳେଟି ଗୁରୁ ମହାନ୍ତ, ଏମାନେ ମଧ୍ୟ ପରମ ପବିତ୍ର ।
ପଦ ୧୧୯-୨୭

× × ×

ଓଡ଼ିଶା ଗୁରୁ ମହାନ୍ତ ଭଜନ, ଏହା କହିବା ରୁ ହେତୁରେ ମନ ।
ସୂର୍ଯ୍ୟ ଏକାକ୍ଷର ମତ ଅନନ୍ତ, ବ୍ରହ୍ମ ଏକାକ୍ଷର ଭଜେ ଅଚ୍ୟୁତ ।
ଏକାକ୍ଷର ମନ୍ତ୍ର ଜଗନ୍ନାଥ ଦାସ କହି' ପଞ୍ଚାକ୍ଷିକା ଯଶୋବନ୍ତ ବୋଲଇ ।
ପଦ ୧୨୭-୨୨୯

ବେଦ ଓ ପାଞ୍ଚ ଋଷିମାନଙ୍କ ସମ୍ପର୍କରେ କବି ଭକ୍ତ ଓ ପାଠକମାନଙ୍କୁ ଅବଗତ କରାଇଛନ୍ତି । ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ ଏହି ପଞ୍ଚସଖା ଭିନ୍ନ ନାମରେ ଅବତରଣ କରିଥିଲେ । ଦ୍ୱାପର ଯୁଗର ଦାମ, ସୁଦାମ, ସୁବଳ, ସୁବାହୁ ଓ ଶ୍ରୀବତ୍ସ କଳି ଯୁଗରେ ଜଗନ୍ନାଥ, ଅଚ୍ୟୁତ, ବଳରାମ, ଯଶୋବନ୍ତ ଓ ଅନନ୍ତ ନାମରେ ଜନ୍ମଗ୍ରହଣ କଲେ । ସତ୍ୟ, ତ୍ରେତା ଯୁଗରେ ମଧ୍ୟ ଏମାନେ ପୃଥକ୍ ନାମ ଧାରଣ କରି ପଞ୍ଚସଖା ହୋଇ ଅବତରଣ କରିଥିଲେ । ଏହି ରଚନାଟି 'ପ୍ରେମ ଭକ୍ତି ବ୍ରହ୍ମ ଗୀତା' ଠାରୁ ତତ୍ତ୍ୱ ଦୃଷ୍ଟିରୁ ନିମ୍ନମାନର ହେଲେ ହେଁ ଏହାର ଭାଷା ଅପେକ୍ଷାକୃତ ସରଳ ଓ ପ୍ରକାଶ ଭଙ୍ଗୀ ମଧ୍ୟ ସହଜ । କାବ୍ୟର ଶେଷ ସ୍ତବକରେ କବି ନିଜର ଯେଉଁ ପରିଚୟ ପ୍ରଦାନ କରିଛନ୍ତି ତାହା ଓଡ଼ିଆ ସାହିତ୍ୟକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରେ । କାରଣ ଯେଉଁ ସମୟରେ ଜୀବନୀ ବା ଆତ୍ମଜୀବନୀ ରଚନାର ପରଂପରା ନ ଥିଲା ସେହି ସମୟରେ କବି ଆତ୍ମ ପରିଚୟ ପ୍ରଦାନ କରିଛନ୍ତି । ଏ ଦୃଷ୍ଟିରୁ ଏହାର ଭୂମିକା ଗୁରୁତ୍ୱ ପୂର୍ଣ୍ଣ ।

'ଆତ୍ମ ପରଚେ ଗୀତା' ଯଶୋବନ୍ତ ଦାସଙ୍କ ଦ୍ୱାରା ରଚିତ ଏକ ଅପ୍ରକାଶିତ ଗ୍ରନ୍ଥ । ଏଥିରେ ମୁଖ୍ୟତଃ କବିଙ୍କର ଗୁରୁପରିଚୟ ଓ ଗୁରୁବାଦ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ତାତ୍ତ୍ୱିକ ଗ୍ରନ୍ଥ ପରି ଏଥିରେ ମଧ୍ୟ ଜ୍ଞାନ ଓ ତତ୍ତ୍ୱର ବିସ୍ତୃତ ବର୍ଣ୍ଣନା ରହିଛି । "ଅନାମରୁ ନାମ ଅରୂପରୁ ରୂପ, ମହାଶୂନ୍ୟରୁ ଶୂନ୍ୟ, ଅଣାକାରରୁ ଓଁ କାର, ମହାନିତ୍ୟରୁ ନିତ୍ୟ, କ୍ଷୀର ଗର୍ଭରୁ କ୍ଷେତ୍ର ପ୍ରଭୃତିର ଜନ୍ମ ରହସ୍ୟ ଏଥିରେ କବି ବର୍ଣ୍ଣନା କରିଛନ୍ତି । * ନିତ୍ୟ କ୍ଷେତ୍ର ହେଉଛି ନିତ୍ୟ ଗୋଲକ ବା ରାସ ସ୍ଥଳୀ । ସେହି ନିତ୍ୟ ସ୍ଥଳୀର ତତ୍ତ୍ୱ ଉପଲବ୍ଧି କରି ପାରିଲେ ବ୍ରହ୍ମଜ୍ଞାନ ଲାଭ ହୋଇ ପାରିବ । ଅଣାକ୍ଷର ପୁରୁଷଙ୍କୁ ଅଷ୍ଟାଙ୍ଗ ଯୋଗ ମାଧ୍ୟମରେ କେବଳ ଉପଲବ୍ଧି କରି ହେବ । ଏହି ସବୁ ତତ୍ତ୍ୱର ବିସ୍ତୃତ ବର୍ଣ୍ଣନା କବି କରିଛନ୍ତି । ଯୋଗ ସାଧନା କଲେ ଜୀବାତ୍ମା ଓ ପରମାତ୍ମାର ମିଳନ ଘଟେ । ନଚେତ୍ ବାରମ୍ବାର ମର୍ତ୍ତ୍ୟରେ ଅବତରଣ କରିବାକୁ ପଡ଼େ । † ଏ ଗ୍ରନ୍ଥଟିକୁ ଅନୁଧ୍ୟାନ କଲେ ଜଣାଯାଏ, ଗୁରୁବାଦ ସହିତ ବ୍ରହ୍ମଜ୍ଞାନର ତାତ୍ତ୍ୱିକ ବ୍ୟାଖ୍ୟା କରିବା ଉଦ୍ଦେଶ୍ୟରେ ଏହା ରଚିତ । କିନ୍ତୁ ଉପମା, ରୂପକ, ବିରୋଧା-

---

* ଡଃ ବଂଶୀଧର ମହାନ୍ତି ଓଡ଼ିଆ ସାହିତ୍ୟର ଇତିହାସ—ପୃ ୪୪୯-୧୯୬୭ ।

† ରୂପ ନାମ ବହି ଏଥି ରହିଛି, ଅରୂପ ଅନାମ ବାହାରେ ଅଛି ।
ରୂପ ନାମ ହୋଇ ଗ୍ରାଇ ରହିଲ । ଏଣୁ କରି ସେହି ଭେଦ ହୋଇଲ ।
ଅରୂପ ଅନାମ ବହିଲ ଯେହି, ଆନ ନାହିଁ ଆପେ ନ ଥାଇ ଯାହିଁ ।
ଦେହରୁ ଆତ୍ମା ଯାଇ ଯେତେବେଳେ, ଅନାମେ ମିଶଇ ବୃକ୍ଷରୁ ଠୁଳେ ।
ଅଭ୍ୟାସ କଲେଣ ତାହାକୁ ପାଇ, ନୋହିଲେ ଆତଯାତ ହେଉଥାଇ ।
(ଆତ୍ମ ପରଚେ ଗୀତା—ତୃତୀୟ ଅଧ୍ୟାୟ—୩୯-୪୩ ପଦ)

ଭାସ ଇତ୍ୟାଦ ଅଲଙ୍କାର ପ୍ରୟୋଗ ମାଧ୍ୟମରେ ବର୍ଣ୍ଣନାର କାବ୍ୟକତା ଆଣିବା ପାଇଁ କବ ଚେଷ୍ଟା କରିଛନ୍ତି । ତେଣୁ ଶୁଷ୍କ ତତ୍ତ୍ୱର ବର୍ଣ୍ଣନା ରହିଥିଲେ ହେଁ ତାହା ସବୁ ସମୟରେ ନୀରସ ବୋଧହୁଏ ନାହିଁ ।

ଯଶୋବନ୍ତ ଦାସଙ୍କ ରଚିତ 'ଶିବ ସ୍ୱରୋଦୟ' ଗ୍ରନ୍ଥଟି ସଂସ୍କୃତ ରଚନାର ପୂର୍ଣ୍ଣପୂର୍ଣ୍ଣ ଅନୁବାଦ ନ ହେଲେ ମଧ୍ୟ ଏହି ବିଷୟବସ୍ତୁ ଉପରେ ପର୍ଯ୍ୟବେସିତ ଏବଂ କେତେକ ସ୍ଥାନରେ କବି ଗୋଟିଏ ଗୋଟିଏ ପଦର ଅକ୍ଷରଶଃ ଅନୁବାଦ ମଧ୍ୟ କରିଛନ୍ତି । ମୂଳ ଗ୍ରନ୍ଥ ଏକୋଇଶିଟି ଅଧ୍ୟାୟରେ ବିଭକ୍ତ । ଏହା ଏକ ତାନ୍ତ୍ରିକ ବିଷୟ ସମ୍ବଳିତ ଗ୍ରନ୍ଥ । ସ୍ୱରଜ୍ଞାନ ସମ୍ପର୍କରେ ବିସ୍ତୃତ ଆଲୋଚନା ଏଥିରେ ହୋଇଛି । ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ି ଚାଳନାର ନିୟମ ଓ ଏହାର ଫଳାଫଳ ନାଡ଼ି ଚାଳନାର ବିପରୀତ ଲକ୍ଷଣ, ନାଡ଼ି ସମ୍ପର୍କୀୟ ତତ୍ତ୍ୱ ସ୍ୱରଜ୍ଞାନ ସମ୍ପର୍କୀୟ ତଥ୍ୟ ଓ ପ୍ରାଣାଦି ବାୟୁ ଚାଳନାର ନିୟମ, ସମ ଯୁଦ୍ଧ, ଦ୍ୟୁତ ଯୁଦ୍ଧ ଇତ୍ୟାଦି ଯୁଦ୍ଧ ପ୍ରକରଣ, ଦେବୀ ବଶୀକରଣ ଓ ସ୍ତ୍ରୀ ବଶୀକରଣ ବିଧି, ଗର୍ଭାଧାନ ପ୍ରକରଣ ଓ ରୋଗ ପ୍ରକରଣ, ସଂବତ୍ସରର ଭଲମନ୍ଦ ଫଳ କଥନ ଇତ୍ୟାଦି ବିଭିନ୍ନ ବିଷୟରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । ଏହା ସହଜ, ସରଳ ଓ ସୁବୋଧ ସଂସ୍କୃତ ଭାଷାରେ ରଚିତ । ଏହି ଗ୍ରନ୍ଥର ଅନୁକରଣରେ ଯଶୋବନ୍ତ 'ଶିବ ସ୍ୱରୋଦୟ' ରଚନା କରିଛନ୍ତି । ମୂଳଗ୍ରନ୍ଥର କିଛି ଅଂଶ ଏଥିରେ ବାଦ୍ ଦିଆଯାଇଛି । ସ୍ୱର ଶାସ୍ତ୍ରର ବିଧିବିଧାନ ଏଥିରେ ସହଜ ଓ ସରଳ ଭାଷାରେ ବର୍ଣ୍ଣିତ । ଆଧ୍ୟାତ୍ମିକ ଓ ସୁସ୍ଥ ଜୀବନ ଯାପନ କରିବାର ଅନୁପ୍ରେରଣା ଏଥିରେ ସଂରକ୍ଷିତ । କାରଣ ସାଧୁ ସନ୍ଥଙ୍କ ସହିତ ସାଧାରଣ ଜନତା ମଧ୍ୟ ସ୍ୱର ସାଧନା ପ୍ରତି ଆକୃଷ୍ଟ ହେଉଥିଲେ । ସ୍ୱର ସାଧନା ଯୋଗୁ ଜନ ସାଧାରଣ ନୀରୋଗ ଜୀବନ ଯାପନ କରୁଥିଲେ । ତେଣୁ ଏ ଗ୍ରନ୍ଥଟିର ତତ୍କାଳୀନ ସାମାଜିକ ଉପଯୋଗିତା ମଧ୍ୟ ରହିଛି । ଏ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି—ଯେ କୌଣସି ବ୍ୟକ୍ତିଙ୍କୁ ସ୍ୱରୋଦୟ ଶାସ୍ତ୍ର ଶିକ୍ଷା ଦିଆଯାଇ ନ ପାରେ । ଦୁର୍ଜନ, କ୍ଷୁଦ୍ର-ମତି, ଆତୁର ବିହୀନ, କାମାସକ୍ତ, ଅଭକ୍ତ ଓ ଦୁଷ୍ଟକର୍ମ ଯୁକ୍ତ ବ୍ୟକ୍ତି ଏହି ଶାସ୍ତ୍ରଚର୍ଚ୍ଚା କରିବାପାଇ ଅନୁପଯୁକ୍ତ । କେବଳ ଶାନ୍ତମତି, ଶୁଦ୍ଧଚିତ୍ତ, ସଦାଗୁରୁ ପରୋପକାରୀ, ସ୍ଥିରମନା ଏବଂ ଦୃଢ଼ଭକ୍ତ ଓ ଏକାଗ୍ରତା ଥିବା ବ୍ୟକ୍ତିମାନେ ହିଁ ଏହା ଶିକ୍ଷା କରିବା ପାଇଁ ଉପଯୁକ୍ତ । †ଏହି ସ୍ୱରଜ୍ଞାନ ସଂପର୍କରେ ଜାଣିବାପାଇଁ ପାର୍ବତୀ ଶିବଙ୍କୁ ଜିଜ୍ଞାସା କରିଛନ୍ତି ଓ ଶିବ ଉତ୍ତରରେ କହିଛନ୍ତି ଯେ ଦେହ ମଧ୍ୟରେ ଚାରି ବେଦ ଓ ଷଡ଼ଶାସ୍ତ୍ର ଇତ୍ୟାଦି ଜ୍ଞାନ ତତ୍ତ୍ୱ ରହିଛି । ଦେହ ମଧ୍ୟରେ ସ୍ୱର ବା ବାୟୁ ପ୍ରସର ରହିଛି । ଦେହ ମଧ୍ୟରେ ଥିବା ବାତ୍ତସୀ

---

† ଶାନ୍ତମତି ଶୁଦ୍ଧଚିତ୍ତ ସଦାଗୁରୁ ଯେହି, ଦୃଢ଼ଭକ୍ତ ଏକାଗ୍ରମାନସ ଅବାହୋଇ
ମନରେ ବୈକଲ୍ୟ ନାହିଁ ପର ଉପକାରୀ, ସ୍ୱରୋଦୟ ଶାସ୍ତ୍ର ତାକୁ କହିବ ବିସ୍ତାରି ।
(ଶିବ ସ୍ୱରୋଦୟ-ପଦ ୨୯-୨୨ ପୃଷ୍ଠା)

ହଜାର ନାଡ଼ି ଷଡ଼ଚକ୍ର ଭେଦକରି ପ୍ରବାହିତ ହୁଏ । ବାସ୍ତରି ହଜାର ନାଡ଼ିରୁ ଦଶଟି ନାଡ଼ି ଶ୍ରେଷ୍ଠ । ସେମାନେ ହେଲେ ଇଡା, ପିଙ୍ଗଳା, ସୁଷୁମ୍ନା, ଗାନ୍ଧାରୀ, ହସ୍ତିଜିହ୍ୱା, ପୂଷା, ଯଶସ୍ୱିନୀ, ଅଳମ୍ବୁଷା, କୁହୁ, ଶଙ୍ଖିନୀ । ପୁଣି ଏହି ଶ୍ରେଷ୍ଠ ଦଶନାଡ଼ି ମଧ୍ୟରେ ଇଡା, ପିଙ୍ଗଳା, ସୁଷୁମ୍ନା ହେଉଛନ୍ତି ଗରିଷ୍ଠ। ସୁଷୁମ୍ନା ସ୍ୱରରେ ଯେ କୌଣସି କାର୍ଯ୍ୟ କଲେ ତାହା ନିଷ୍ଫଳ ହୁଏ । ✳ ପୁଣି କେଉଁ ନାଡ଼ିରେ କାର୍ଯ୍ୟକଲେ ଶୁଭ ମଧ୍ୟ ହୁଏ । ଯେପରି ସମସ୍ତ ଶୁଭକାର୍ଯ୍ୟ ଚନ୍ଦ୍ର ନାଡ଼ିରେ ହୁଏ । ସୂର୍ଯ୍ୟ ସ୍ୱରରେ ଶାସ୍ତ୍ର ପଠନ ଓ ଉଗ୍ରକର୍ମମାନ କରାଯାଇପାରେ । କବି ଉଗ୍ର କର୍ମ ରୂପରେ ବିବାଦ, ଅସ୍ତ୍ର ଚାଳନା ଯୁଦ୍ଧ ଖେଳ, ଗଜ-ଅଶ୍ୱ-ଆରୋହଣ ଇତ୍ୟାଦିକୁ ଗ୍ରହଣ କରିଛନ୍ତି । କେଉଁ ନାଡ଼ିରେ ବାୟୁ ସଞ୍ଚାଳିତ ହେଲେ କି କାର୍ଯ୍ୟ ସାଧନ କରାଯାଇ ପାରିବ ତାହା ଷୋଡ଼ଶ ଶତାବ୍ଦୀର ସନ୍ଥକବିମାନେ ଭଲଭାବରେ ଜାଣିଥିଲେ । ଯଶୋବନ୍ତ ଏହି ପୁସ୍ତକରେ ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି । ଗୃହ ପ୍ରବେଶ, ସ୍ୱାମୀ ବା ମିତ୍ର ଦର୍ଶନ, କୃଷିକାର୍ଯ୍ୟ, ବିଦ୍ୟାରମ୍ଭ ଯଜ୍ଞକର୍ମ, ଦେବତା ପ୍ରତିଷ୍ଠା, ଗୁରୁଦୀକ୍ଷା, ମନ୍ତ୍ର ସାଧନା ଇତ୍ୟାଦି କର୍ମଗୁଡ଼ିକ ନାଡ଼ିରେ ବାୟୁଚାଳନା ଉପରେ ନିର୍ଭରକରେ । ସ୍ୱରଜ୍ଞାନଦ୍ୱାରା ଅନ୍ତରରେଥିବା ରୋଗର ନିରାକରଣ କରାଯାଇପାରେ ବିଷଦ୍ୱାରା ଆକ୍ରାନ୍ତ ବ୍ୟକ୍ତିକୁ ସୂର୍ଯ୍ୟସ୍ୱରରେ ଝାଡ଼ିଲେ ବିଷଦୂର ହୋଇଯାଏ । ସ୍ନାନ, ଭୋଜନ, ମୈଥୁନ ଓ ଶତ୍ରୁମାରଣ ଉଚ୍ଚାଟନ ଇତ୍ୟାଦି ବିଦ୍ୟାମାନ ମଧ୍ୟ ଏହାଦ୍ୱାରା ହାସଲ କରାଯାଇପାରେ । ଏହି ସ୍ୱର ମାଧ୍ୟମରେ ସ୍ତମ୍ଭନ, ମୋହନ ବଶୀକରଣ ଇତ୍ୟାଦି କାର୍ଯ୍ୟ କରାଯାଇପାରେ । ସେ ସମ୍ପର୍କରେ କବି 'ଶିବ ସ୍ୱରୋଦୟ'ରେ ବର୍ଣ୍ଣନା କରିଛନ୍ତି । †† ଭୂତ, ପ୍ରେତ, ବେତାଳ ଇତ୍ୟାଦିଙ୍କୁ ମଧ୍ୟ ବାୟୁର ସଂଯତ ଚାଳନଦ୍ୱାରା ଦମନ କରାଯାଇପାରେ । ଏହିପରି ପଞ୍ଚସଖା ସାଧକମାନେ କରି ପାରୁଥିଲେ ବୋଲି ଅସମ୍ଭବ ତଥା ଅଲୌକିକ କାର୍ଯ୍ୟସବୁ ହୋଇ ପାରୁଥିଲା । ଯଶୋବନ୍ତଙ୍କ 'ଗୋବିନ୍ଦଚନ୍ଦ୍ର'ରେ ହାଡ଼ିପା, ତନ୍ତ୍ରୀପା, ଗୋରେଖନାଥ ଓ ଗୋବିନ୍ଦଚନ୍ଦ୍ର ଅଲୌକିକ କାର୍ଯ୍ୟ କରିଥିବାର ଦୃଷ୍ଟାନ୍ତ ରହିଛି । ସେମାନେ ପୁଣି ଅନାଗତ କଥା ଜାଣି ପାରୁଥିଲେ । ରୋଗ ଭୋଗୁଥିବା ବ୍ୟକ୍ତି ରୋଗମୁକ୍ତ ହେବକି ନାହିଁ । ଯୁଦ୍ଧକୁ ଯାଉଥିବା ବ୍ୟକ୍ତିର ଜୟ ବା ପରାଜୟ ଘଟିବ ଏସବୁ ପ୍ରଶ୍ନର ନିର୍ଭୁଲ ଉତ୍ତର ଦେଇ ପାରୁଥିଲେ । ପ୍ରଶ୍ନକର୍ତ୍ତା ଯେଉଁ ସମୟରେ ପ୍ରଶ୍ନ ପଚାରୁଥିଲେ ସେହି ସମୟର ବାୟୁ ଚାଳନାକୁ ଲକ୍ଷ୍ୟକରି ପୁତ୍ର ବା କନ୍ୟା ଜାତ ହେବ, ତାହା ମଧ୍ୟ ଜାଣିପାରୁଥିଲେ ।

---

✳ ଏ ନାଡ଼ିରେ ଅଗ୍ନି ସ୍ଥିତ କାଳରୂପୀ ସେହି
ସର୍ବକାର୍ଯ୍ୟ ବିନାଶକୁ ବିଷୁବନ୍ତୀ କହି ।

(ଶି. ସ୍ୱ.-ପଦ ୧୬୩-ପୃ୫)

†† ଯୁବତୀଙ୍କ ବଶକୁଟି ଏ ସ୍ୱର ପ୍ରଧାନ, ସ୍ତମ୍ଭନ ମୋହନ ଉଚ୍ଚାଟନ ମାନ ।

(ପଦ-୧୦୪ ପୃ ୧୦)

ଏମନ୍ତକ ଗର୍ଭରେ ଯାମଳା ପୁତ୍ର ବା କନ୍ୟା ଥିଲେ ଜାଣି ପାରିବା ଅସମ୍ଭବ ହୁଏ ନାହିଁ । * ଏହି ବାୟୁ ସ୍ୱରନାଡ଼ୀଦ୍ୱାରା ବ୍ୟକ୍ତି କେଉଁଦିନ ଦେହତ୍ୟାଗ କରିବ ତାହା ଜାଣିବା ସଂଭବ ହୁଏ । ସେଥିପାଇଁ ଏହି ସାଧକଗଣ ନିଜ ନିଜର ମହାପ୍ରସ୍ଥାଣର ଦିନ, ବହୁ ପୂର୍ବରୁ ଜାଣି ପାରିଥିଲେ । ଯେପରି ଯଶୋବନ୍ତ ମାର୍ଗଶିର ମାସ ଉତ୍କଳ ଷଷ୍ଠୀରେ ଇହଧାମ ତ୍ୟାଗ କରିବେ ବୋଲି ପୂର୍ବରୁ ଜାଣିଥିବା ବିଷୟ ବିଭିନ୍ନ ଗ୍ରନ୍ଥରେ ଉଲ୍ଲେଖ ହୋଇଛି । ମରଣ ନିକଟ ହେଲେ ଚନ୍ଦ୍ରସ୍ୱର ଉଦୟ ହୁଏ ଓ ସେହି ବର୍ଷରେ ମୃତ୍ୟୁବରଣ କରିବା ବିଷୟ ଜଣାଯାଏ । † ଏ ତତ୍ତ୍ୱ କେବଳ ସାଧକ ଯୋଗୀମାନେ ଜାଣିପାରନ୍ତି ଓ ସତର୍କ ହୋଇ ଚନ୍ଦ୍ରସ୍ୱର ପ୍ରକାଶ ନ କରିବାର ଯତ୍ନ କରନ୍ତି ।

ଜଳତତ୍ତ୍ୱ ଅଗ୍ନିତତ୍ତ୍ୱ, ବାୟୁତତ୍ତ୍ୱ, ଆକାଶ ତତ୍ତ୍ୱ ମାଧ୍ୟମରେ କୃଷି ବିଷୟରେ ମଧ୍ୟ ଜାଣିହୁଏ । ଜଳତତ୍ତ୍ୱ ହେଲେ ବହୁଶସ୍ୟ ଜାତହୁଏ । ଅଗ୍ନି ତତ୍ତ୍ୱରେ ଅଳ୍ପ ଅଳ୍ପ ବୃଷ୍ଟି ହେତୁ ଦୁର୍ଭିକ୍ଷ ଓ ଦାରୁଣ ରୋଗ ଉତ୍ପନ୍ନ, ମେଷ ସଂକ୍ରାନ୍ତି ଦିନ ବାୟୁତତ୍ତ୍ୱ ହେଲେ ବହୁ ପ୍ରକାର ଉତ୍ପାତ ଓ ଉପଦ୍ରବ ଭସ୍ମ କୀଟ ଜାତ ହୁଏ । ଆକାଶ ତତ୍ତ୍ୱରେ ଲେଶ ମାତ୍ର ସୁଖ ନ ଥାଏ । କାରଣ ଆକାଶ ଶୂନ୍ୟ ଥାଏ ଓ ସବୁ ପ୍ରକାର କର୍ମହାନି ଘଟେ । ତେଣୁ ବସ୍ତୁ ସ୍ଫୁରଣ ବିନା ଶସ୍ୟ ନ ଥାଏ । ଚନ୍ଦ୍ରସ୍ୱରରେ ପୃଥ୍ୱୀତତ୍ତ୍ୱ ଓ ଜଳତତ୍ତ୍ୱ ଥାଏ । ସୂର୍ଯ୍ୟ ସ୍ୱରରେ ଅଗ୍ନି, ବାୟୁ, ଆକାଶତତ୍ତ୍ୱର ପ୍ରକାଶ ହୁଏ । ପୁଣି ସାଧକ କବି ଯଶୋବନ୍ତ ଦର୍ଶାଇଛନ୍ତି ଯେ, ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ଯଦି ସୋମବାର, ବୁଧବାର, ଗୁରୁବାର ଅଥବା ଶୁକ୍ରବାର ହୁଏ ତେବେ

---

* ପୃଥ୍ୱୀ ଜଳ ତତ୍ତ୍ୱବେଳେ ପ୍ରଶ୍ନ ପଚ୍ଛୁର,
ପୁତ୍ର ଉପୁଜିବ ନିଶ୍ଚେ ଜାଣ ଶାକମ୍ଭରୀ
ବାୟୁ ତତ୍ତ୍ୱବେଳେ ପ୍ରଶ୍ନକଲେ ଗୋ ସୁନ୍ଦରୀ,
ଜାଣିବ ନିଶ୍ଚୟ ଜାତ ହୋଇବ କୁମାରୀ
ତେଜ ଗର୍ଭେ ଜାତ ହୋଇ ଲଭେ ନ ଫୁସକ,
ତତ୍ତ୍ୱବୋଧ କରି କହି କନ୍ୟାକ ବାଳକ
ପ୍ରଶ୍ନବେଳେ ଦୁଇ ସ୍ୱର ଶୂନ୍ୟ ଯେବେ ହୋଇ,
ଜାଣିବ ଦୁଇ କୁମାରୀ ଅବଶ୍ୟ ଜନ୍ମଇ
ଦୁଇସ୍ୱର ପୂର୍ଣ୍ଣାନ୍ତରେ ବହୁଥାଇ ଯେବେ,
ଦୁଇ ପୁତ୍ର ଉପୁଜଇ ଜାଣ ତୁ ଗୋ ଏବେ ।

(ପଦ ୩୮-୪୯ ପୃଷ୍ଠା ୩୦)

† ମରଣ ନିକଟ ହେଲେ ଚନ୍ଦ୍ର ଉଦେ ହୋଇ,
ଜାଣିବ ସେ ବରଷରେ ମୃତ୍ୟୁ ନିଶ୍ଚେ ପାଇ । (ପଦ ୮୮-ପୃ ୪୭)

ସେହିଦିନ ପ୍ରଭାତରେ ଚନ୍ଦ୍ରସ୍ୱର ପ୍ରକାଶିତ ହେଲେ ଅଶେଷ ଶୁଭଫଳ ମିଳେ । ଯାତ୍ରା ସିଦ୍ଧି ହୁଏ ଓ ସମସ୍ତ କାର୍ଯ୍ୟରେ ଜୟଯୁକ୍ତ ହେବାର ସୁଯୋଗ ମିଳେ । ବାୟୁତତ୍ତ୍ୱ ଉଦୟ ବେଳେ ଯଦି ସ୍ତ୍ରୀ ସଙ୍ଗମ ହୁଏ ଅଥବା ପୁତ୍ର ଯେବେ ଜାତ ହୁଏ ତେବେ ସେ ପୁତ୍ର ରୋଗ-ଜ୍ୱାସ୍ତ ହୁଏ ଓ ତା'ର ଜନ୍ମ ବ୍ୟର୍ଥ ହୁଏ । କିନ୍ତୁ ଯଦି ଅଗ୍ନିତତ୍ତ୍ୱ ବେଳେ ସଙ୍ଗମ ହୁଏ ତେବେ ଗର୍ଭସ୍ରାବ ହୁଏ, କେବେ ହେଁ ତିଷ୍ଠି ପାରେ ନାହିଁ, ଯଦିବା ଜନ୍ମଲାଭ କରେ ତେବେ ସେ ଅଳ୍ପାୟୁଷ ଓ ଦରିଦ୍ର ହୁଏ । ଜଳତତ୍ତ୍ୱ ବେଳେ ଗର୍ଭଧାରଣ କଲେ ସେ ପୁତ୍ର ଚିରଞ୍ଜୀବୀ ଧନବନ୍ତ ଓ ସୁଖୀ ହୁଏ । ଏହିପରି ସେ ବିଭିନ୍ନ ତତ୍ତ୍ୱ ଓ ତାହାର ଭେଦାଭେଦ ଦର୍ଶାଇଛନ୍ତି । କବି ପୁଣି ପୃଥ୍ୱୀତତ୍ତ୍ୱ, ଅଗ୍ନିତତ୍ତ୍ୱ, ଆକାଶତତ୍ତ୍ୱ ଓ ବାୟୁତତ୍ତ୍ୱ ଏହି ପାଞ୍ଚ-ତତ୍ତ୍ୱରେ ରୋଗ ଓ ସ୍ୱାସ୍ଥ୍ୟର ଫଳାଫଳ ବିଷୟରେ ମଧ୍ୟ ସୂଚନା ଦେଇଛନ୍ତି । ସାଧକମାନେ କେବଳ ଜାଣି ପାରନ୍ତି, କେଉଁ ସ୍ୱର କପର ଭାବରେ ପ୍ରବାହିତ ହେଲେ କ'ଣ ଫଳାଫଳ ହୁଏ । ପୃଥ୍ୱୀତତ୍ତ୍ୱରେ ପେଟ ବ୍ୟାଧି, ଜଳତତ୍ତ୍ୱରେ ପାଦର ରୋଗ, ଅଗ୍ନିତତ୍ତ୍ୱରେ ହୃଦୟ ବ୍ୟାଧି ଓ ଆକାଶ ତତ୍ତ୍ୱରେ ମସ୍ତକ ଆଘାତ ଇତ୍ୟାଦି ବିଷୟ ଜାଣି ହୁଏ । ସୃଷ୍ଟିତତ୍ତ୍ୱ ଓ ଶୂନ୍ୟତତ୍ତ୍ୱର ବିଷୟରେ ମଧ୍ୟ କବି ଉଲ୍ଲେଖ କରିଛନ୍ତି । ସୃଷ୍ଟିତତ୍ତ୍ୱ ବେଳେ ଯେକୌଣସି କାର୍ଯ୍ୟରେ ଅନୁକୂଳ କଲେ କାର୍ଯ୍ୟସିଦ୍ଧି ହୁଏ । ପୁଣି ଚନ୍ଦ୍ରସ୍ୱର ସ୍ଥାନରେ ଯଦି ସୂର୍ଯ୍ୟସ୍ୱର କିମ୍ବା ସୂର୍ଯ୍ୟସ୍ୱର ସ୍ଥାନରେ ଚନ୍ଦ୍ରସ୍ୱର ଉଦୟ ହୁଏ ଏବଂ ଆଠଦିନ ପର୍ଯ୍ୟନ୍ତ ଯଦି ଏପରି ହୁଏ, ତେବେ ଏହି ବ୍ୟତିକ୍ରମ ଯୋଗୁ କିଛି ଅଶୁଭ ଘଟେ । ପ୍ରଥମରେ ମନ ଓ ଦ୍ୱିତୀୟରେ ଧନ ହାନି ହୁଏ । ତୃତୀୟରେ ବହୁତ ଗମନ କରିବାକୁ ପଡ଼େ, ଚତୁର୍ଥରେ ଇଷ୍ଟନାଶ, ପଞ୍ଚମରେ ରାଜା ବିନାଶ ପାଏ । ଷଷ୍ଠରେ ରାଜ୍ୟ ନଷ୍ଟହୁଏ, ସପ୍ତମରେ ରୋଗାକ୍ରାନ୍ତ ଓ ଅଷ୍ଟମରେ ମୃତ୍ୟୁ ନିଶ୍ଚୟ ହୁଏ । ଏହିପରି କବି ଆଠଦିନରେ ସ୍ୱରର ବ୍ୟତିକ୍ରମ ସ୍ଥିତିରେ ଅଠପ୍ରକାର ଅଶୁଭ ଫଳ କିପରି ପ୍ରକଟିତ ହୁଏ ତାହା ସ୍ପଷ୍ଟ ଭାବରେ ସୂଚାଇଛନ୍ତି । ପୁନଶ୍ଚ ଏହି ସ୍ୱର ଯଦି ଅଷ୍ଟଦିନ ପରିବର୍ତ୍ତେ ଏକ ପକ୍ଷ ପର୍ଯ୍ୟନ୍ତ ବିପରୀତରେ ଉଦୟ ହୁଏ ତେବେ ରୋଗ ବୃଦ୍ଧି ହୁଏ ଏବଂ ବନ୍ଧୁ କ୍ଳେଶ ଜାତ ହୁଏ । ଯଦି ଦୁଇପକ୍ଷ ପର୍ଯ୍ୟନ୍ତ ଏହା ଗତି କରେ ତେବେ ଭାଇ, ମିତ୍ର, ବନ୍ଧୁ ଓ ଶତ୍ରୁ ମରାମରି ହୁଅନ୍ତି । ତିନି ପକ୍ଷ ହେଲେ ମୃତ୍ୟୁ ଘଟେ । ଯେକୌଣସି ମାସ ବା ଯେକୌଣସି ପକ୍ଷ ହେଉ ଯଦି ମାସ ବା ପକ୍ଷର ଆଦ୍ୟରେ ବିପରୀତରେ ସ୍ୱର ଉଦୟ ହୁଏ, ତେବେ କିଛି ଦିନ ପରେ ପ୍ରାଣରେ କଷଣ ଥିବା ଜଣାଯାଏ । ରାତ୍ର ଦିବସରେ ଯଦି ସ୍ୱର ବାମରେ ରହେ ଓ ଯେତେ ଚେଷ୍ଟା କଲେ ମଧ୍ୟ ସ୍ୱରର ଗତି ପରିବର୍ତ୍ତିତ ହୁଏ ନାହିଁ, ତେବେ ତିନିବର୍ଷ ମଧ୍ୟରେ ମୃତ୍ୟୁ ହୁଏ । କବି ଏ କଥା ଉପରେ ଜୋର ଦେଇ କହିଛନ୍ତି ସେହି ଦିନଠାରୁ ଗୋଟିଏ ଗୋଟିଏ କରି ଦିନ ଗଣନା କରି ତିନି ବର୍ଷ ପର୍ଯ୍ୟନ୍ତ ଲକ୍ଷ୍ୟ କରିହୁଏପାରେ । ଏଥିରେ କେବେ ଅନ୍ୟଥା ଘଟେ ନାହିଁ । ଏହି ବାୟୁ ଦୁଇଦିନ ଧରି ରହିଲେ ଦୁଇବର୍ଷ ମଧ୍ୟରେ ଓ ତିନିଦିନ ବ୍ୟାପୀ ରହିଲେ ଏକ ବର୍ଷରେ ମୃତ୍ୟୁ ହୁଏ । ଇଡ଼ା, ପିଙ୍ଗଳା ଓ ସୁଷୁମ୍ନାକୁ କବି ଗଙ୍ଗା,

ଯମୁନା ଓ ସରସ୍ୱତୀ ରୂପରେ ଆରୋପ କରିଛନ୍ତି । ଏହି ତିନିନଦୀର ମିଳନସ୍ଥଳ ପ୍ରୟାଗ, ଯେପରି ଏକ ପବିତ୍ରତୀର୍ଥ ସ୍ଥଳୀ, ଏହି ବାୟୁକୁ ଏକକରି ସାଧି ପାରିବା ସେହିପରି ଏକ ପବିତ୍ର କର୍ମ । ଏହାକୁ ସାଧନ କରିପାରିବା ବ୍ୟକ୍ତିର ଯମଦଣ୍ଡ ନ ଥାଏ । *

ମୃତ୍ୟୁ ହିଁ ମଣିଷ ଜୀବନର ଅନ୍ତିମ ଅବସ୍ଥା । ଶରୀରକୁ ରୋଗମୁକ୍ତ କରିବାପାଇଁ, ଦୀର୍ଘାୟୁ ହେବା ପାଇଁ କିମ୍ବା ମୃତ୍ୟୁମୁଖରୁ ନିଜକୁ ରକ୍ଷା କରିବା ପାଇଁ କାଳେ କାଳେ ମଣିଷ ଚେଷ୍ଟା କରି ଆସିଛି । ଆଜି ବୈଜ୍ଞାନିକ ଯୁଗରେ ମଧ୍ୟ ମାନବ ଚରମ ସଫଳତା ହାସଲ କରି ପାରିନାହିଁ । ତଥାପି ଚେଷ୍ଟା ଅବ୍ୟାହତ ରହିଛି । ସନ୍ଥ, ସାଧକ, ଯୋଗୀମାନେ ମଧ୍ୟ ଆଧ୍ୟାତ୍ମିକ ଶକ୍ତି ପ୍ରୟୋଗ କରି ଯୋଗ ମାର୍ଗ ଅବଲମ୍ବନ କରି ଅମରତ୍ୱ ଲାଭ କରିବାପାଇଁ ସତତ ପ୍ରୟାସୀ । ସାଧକ କବି ଯଶୋବନ୍ତ 'ଶିବ ସ୍ୱରୋଦୟ' ପୁସ୍ତକରେ ମୃତ୍ୟୁର ଦିନଟିକୁ ଜାଣିବା ପାଇଁ ଓ ପୂର୍ବରୁ ଜାଣିପାରି ସେଥିପ୍ରତି ସତର୍କ ହେବାପାଇଁ ଅଧିକ ଦୃଷ୍ଟି ଦେଇଥିବା ଲକ୍ଷ୍ୟ କରାଯାଏ । ବିଭିନ୍ନ ସ୍ଥଳରେ ସେହି ଅନ୍ତିମ ଦିନଟିର କଥାହିଁ ଉଲ୍ଲେଖ ହୋଇଛି । ପୁସ୍ତକର ଶେଷ ପର୍ଯ୍ୟାୟରେ କବି ପୁଣି ମୃତ୍ୟୁର କଥା କହିଛନ୍ତି । ମୃତ୍ୟୁର ଅବସ୍ଥାନରୁ ମୃତ୍ୟୁ ତିନିମାସ ପରେ କିମ୍ବା ଛଅମାସ ପରେ ହେବ ତାହା ଜାଣିହୁଏ । କୌଣସି ବ୍ୟକ୍ତିର ମୃତ୍ୟୁ ଯଦି ଛଅମାସ ପରେ ହେବାର ଥାଏ ତେବେ ଧ୍ରୁବ ଅରୁନ୍ଧତୀ ଓ କୃତ୍ତିକା ନକ୍ଷତ୍ର ଆକାଶରେ ଉଦିତ ହୋଇଥିଲେ ମଧ୍ୟ ବ୍ୟକ୍ତିକୁ ଦୃଶ୍ୟ ହୁଏ ନାହିଁ । ପୁଣି କବି ଏହି ତିନି ନକ୍ଷତ୍ରକୁ ଶରୀରରେ ଆରୋପ କରି ଦର୍ଶାଇଛନ୍ତି ଯେ ମୃତ୍ୟୁର ନିକଟବର୍ତ୍ତୀ ହୋଇଥିବା ବ୍ୟକ୍ତିକୁ ତାର ଜିହ୍ୱା ତାକୁ ଦେଖାଯାଏ ନାହିଁ । ଜିହ୍ୱାକୁ ଅରୁନ୍ଧତୀ ବୋଲି କବି ବର୍ଣ୍ଣନା କରିଛନ୍ତି । ସେହିପରି ମୃତ୍ୟୁମୁଖୀ ବ୍ୟକ୍ତିକୁ ତାର ନାସାଗ୍ର ଓ ଭ୍ରୂରୁ ମଧ୍ୟ ଦେଖାଯାଏ ନାହିଁ । ନାସାଗ୍ରକୁ ଧ୍ରୁବ ନକ୍ଷତ୍ର ଓ ଭ୍ରୂରୁକୁ ବିଷ୍ଣୁପଦ ଭାବରେ କବି ଗ୍ରହଣ କରିଛନ୍ତି । କେଉଁ ଅଙ୍ଗଟି ଦେଖା ନ ଗଲେ କେତେଦିନ ମଧ୍ୟରେ ମୃତ୍ୟୁ ହେବ ତାହା ମଧ୍ୟ କବି ଦର୍ଶାଇଛନ୍ତି ।

ସାମଗ୍ରିକ ଭାବରେ ଆଲୋଚନା କଲେ ଜଣାଯାଏ କବି ସ୍ୱର ଶାସ୍ତ୍ରର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କରିଛନ୍ତି ଏବଂ ଜନଜୀବନରେ ଏହାର ଉପଯୋଗିତା ଦର୍ଶାଇଛନ୍ତି । ଏହାର ଭାଷା ସରଳ ! ଦେଶଜ ଭାଷା ଓ କଳଶା ବାଣୀରେ ଛବିଶହ ପଞ୍ଚଚଉରା ପଦରେ ଏହା ରଚିତ । ପ୍ରାଚୀନ ଯୁଗର କବିଗଣ କାବ୍ୟ ରଚନା ବେଳେ ଯେପରି କେତେକ ନିର୍ଦ୍ଦିଷ୍ଟ ନିୟମର ବଶବର୍ତ୍ତୀ ହେଉଥିଲେ କବି ଯଶୋବନ୍ତ ମଧ୍ୟ ସେସବୁକୁ ଲଙ୍ଘନକରି

* ଏ ତିନି ଏକ ହେଲେ ପ୍ରୟାଗ ତୀର୍ଥ କହି,
ଯେ ଚଳି ସାଧି ପାରିଛି ଯମଦଣ୍ଡ ନାହିଁ

(ପଦ ୪୦୭ – ପୃଷ୍ଠା ୩୭)

ନାହାନ୍ତି । ଗ୍ରନ୍ଥାରମ୍ଭରେ ଇଷ୍ଟଦେବଙ୍କୁ ବନ୍ଦନା କରି ନିର୍ବିଘ୍ନରେ କାବ୍ୟ ରଚନା ସମାପ୍ତ ହେଉ ବୋଲି କାମନା କରିଛନ୍ତି । ସମସାମୟିକ କବିମାନଙ୍କ ପରି ସେ ସମଧର୍ମୀ ମଙ୍ଗଳାଚରଣ ଲେଖିଛନ୍ତି ।

ଏତଦ୍ ବ୍ୟତୀତ ଯଶୋବନ୍ତ ଅନେକ ଗୁଡ଼ିଏ ଭଜନ, ଜଣାଣ, ମାଳିକା ଓ ଗୀତ ରଚନା କରିଛନ୍ତି । ପଞ୍ଚସଖା ସାହିତ୍ୟରେ ମାଳିକାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପଞ୍ଚସଖା, ମାଳିକା ଗୁଡ଼ିକରେ ଭବିଷ୍ୟତବାଣୀ ଶୁଣାଇଛନ୍ତି । ଦେଶରେ କ'ଣ ଘଟିବ, କେଉଁମାନେ ଯୁଦ୍ଧକରି ଦେଶକୁ ମାଡ଼ି ଆସିବେ, ଶ୍ରୀଜଗନ୍ନାଥଙ୍କ ଅଂଶରୁ ସମ୍ଭୂତ ହୋଇ କିପରି ମହାପୁରୁଷମାନେ ଅବତାର ଗ୍ରହଣ କରିବେ ଏବଂ କେଉଁ ଯାଗାରେ ଜନ୍ମଲଭ କରିବେ, ଏହି ସବୁ ବିଷୟ ମାଳିକାଗୁଡ଼ିକରେ ବର୍ଣ୍ଣନା କରାଯାଇଛି । ଏଥିରେ ପୂର୍ଣ୍ଣ କବିଙ୍କର ଜାତୀୟତାବାଦୀ ମନୋଭାବ ପ୍ରକାଶିତ ହୋଇଛି ବୋଲି କୁହାଯାଇପାରେ । କାରଣ ଓଡ଼ିଶାହିଁ ହେଉଛି ଭକ୍ତୋନନ୍ଦର ଅଭିନବ ଲୀଳାସ୍ଥଳୀ । ଯାଜପୁର, ସମ୍ବଲପୁର, ଖଣ୍ଡଗିରି ଇତ୍ୟାଦି ସ୍ଥାନରେ ପ୍ରଭୁ ଆବିର୍ଭୂତ ହେବା ବିଷୟ ଉଲ୍ଲେଖ ରହିଛି । ଯଶୋବନ୍ତ ଏକ ମାଳିକାରେ ଲେଖିଛନ୍ତି—"ପ୍ରଭୁ ଉଦେ ହେବେ ଯେ ଗୁପତ ଖଣ୍ଡଗିରି ।" ପୁନଶ୍ଚ ପ୍ରଭୁ ନେମାଳ, ଯାଜପୁରରେ ଜନ୍ମ ଗ୍ରହଣ କରିବା ବିଷୟ ବର୍ଣ୍ଣନା କରିଛନ୍ତି । 'ଯଶୋବନ୍ତ ଦାସଙ୍କ ମାଳିକା,' 'ଅଠଗଡ଼ ମାଳିକା,' 'ଯଶୋବନ୍ତ ଗୋସାଇଁଙ୍କ ଭବିଷ୍ୟ ଟୀକା' ତତ୍କାଳୀନ ସମାଜ ଚିତ୍ର ସହିତ ଯୁଦ୍ଧ, କଳିଗୋଳ ଇତ୍ୟାଦିର ଭୟଙ୍କର ଅବସ୍ଥା ମଧ୍ୟ ସୂଚିତ । ଏହି ମାଳିକାଗୁଡ଼ିକ ଦୁଷ୍ପ୍ରାପ୍ୟ । କେତେକ ଅପ୍ରକାଶିତ ମଧ୍ୟ । ଅପ୍ରକାଶିତ ପୋଥି 'ଯଶୋବନ୍ତ ଗୋସାଇଁଙ୍କ ଭବିଷ୍ୟ ଟୀକା' ସଂପର୍କରେ ଡଃ ବଂଶୀଧର ମହାନ୍ତିଙ୍କ ଆଲୋଚନାରୁ ଜଣାଯାଏ ଯେ କଳି ଯୁଗର ଶେଷାବସ୍ଥାରେ ଚଉଦ୍ୱାର କଟକ ଓ ଖୋରଧା ଇତ୍ୟାଦି ସ୍ଥାନରେ ଯୁଦ୍ଧ ଲାଗିବ । ଲୋକମାନେ ବହୁଭାବରେ କ୍ଷତିଗ୍ରସ୍ତ ହେବେ । ଧନ, ସମ୍ପତ୍ତି ଲୁଣ୍ଠିତ ହେବ । ଲୋକେ ଭୟଭୀତ ହୋଇ ଅରଣ୍ୟରେ ଆତ୍ମଗୋପନ କରିବେ । ଜଗନ୍ନାଥ ମଧ୍ୟ ନିଜର ପୀଠ ତ୍ୟାଗକରି ଅନ୍ୟତ୍ର ଚାଲିଯିବେ । ଏ ଦୁର୍ଦ୍ଦିନରୁ ରକ୍ଷାପାଇବା ପାଇଁ ହରିନାମ ସ୍ମରଣ କରିବା ଓ ଏକାକ୍ଷର ଜପିବାପାଇଁ କେବଳ ଉପାୟ ଅଟେ । ନଚେତ୍ ଘୋର କଳିରୁ ନିସ୍ତାର ପାଇବା କଷ୍ଟକର ବ୍ୟାପାର । †

---

† ଘୋର ଯେ ଅନ୍ଧାର ହେବ ଚଉବିଶ ପ୍ରହର,
ଘୋଷୁଥିବେ ଭକତ ମୋ ଏକାଇ ଅକ୍ଷର ।
ନଷ୍ଟରେ କଳ୍କି ରୂପ ହେବ ଅବତାର,
ନାଶିବେ ସକଳ ଦୁଃଖ ଅବନୀର ଭାର ।

(ଯଶୋବନ୍ତ ଗୋସେଇଁଙ୍କ ଭବିଷ୍ୟ ଟୀକା)

ଏଥିରେ ଯୁଦ୍ଧର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଏହା ବଙ୍ଗ ଓ ଓଡ଼ିଶା ଏବଂ ଯବନ ଓ ଫିରିଙ୍ଗୀମାନଙ୍କ ମଧ୍ୟରେ ଯୁଦ୍ଧ ବୋଲି ବର୍ଣ୍ଣନାରୁ ମନେ ହୁଏ । † ଅନାଗତ ଭବିଷ୍ୟତ ବିଷୟରେ କବି ମାଳିକାରେ ସୂଚନାଦେବା ପ୍ରସଙ୍ଗରେ ଜ୍ୟୋତିଷ ସହିତ ଭୌଗୋଳିକ ସ୍ଥିତି ବିଷୟରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ଭୂମି ନାଶ ହେବ ଦେଶ ନକ୍ଷେତ୍ର ହେବ । ଶତ୍ରୁମାନେ କେଉଁ ଦିଗରୁ ଆସିବେ, କିପରି ଦେଶକୁ ଅଧିକାର କରିବେ ସେ ସବୁ ବର୍ଣ୍ଣନା ମଧ୍ୟରେ କବିଙ୍କର ଜ୍ୟୋତିଷ ଓ ଭୌଗୋଳିକ ଜ୍ଞାନର ଆଭାସ ମିଳେ ।††

ପୂର୍ବରୁ ଉଲ୍ଲେଖ ହୋଇଛି ଯେ ମାଳିକାଗୁଡ଼ିକ ତତ୍କାଳୀନ ସମାଜର ଅବସ୍ଥା ପ୍ରକାଶନ କରିବାରେ ସମର୍ଥ ହୋଇଥିଲେ । ସମାଜର ବାସ୍ତବଚିତ୍ର ଅଙ୍କନ ମାଧ୍ୟମରେ କବି ପରୋକ୍ଷ ଭାବରେ ଆଦର୍ଶର ପ୍ରତିଷ୍ଠା ପାଇଁ ଯତ୍ନ କରିଛନ୍ତି । ପୃଥିବୀରେ ଅନ୍ୟାୟ ଅନୀତି ହେବ । ପ୍ରତ୍ୟେକଙ୍କର ପ୍ରତ୍ୟେକଙ୍କ ଠାରୁ ବିଶ୍ୱାସ ତୁଟି ଯିବ । ଏପରିକି ପିତାକୁ ପୁତ୍ର ମଧ୍ୟ ବିଶ୍ୱାସ କରିବ ନାହିଁ । ଇନ୍ଦ୍ର ପାଳିକ କରିବ, ତଥାପି ଫସଲ ଉତ୍ପନ୍ନ ହେବନି ବ୍ୟଭିଚାର ସମାଜରେ ବୃଦ୍ଧି ପାଇବ । ପୁଣି ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟ ହେବ । ପ୍ରଚଣ୍ଡ ଖରା ହେବ, ଦିନରେ ତାରା ନକ୍ଷତ୍ର ଦୃଶ୍ୟ ହେବେ । କର୍ଯ୍ୟାତି ପବନ ବହିବ । ଚୋରର ଉପଦ୍ରବ ଏପରି ହେବ ଯେ ଲୋକେ ଏକବସ୍ତ୍ରୀ ହେବେ । ଶଠତା ମଧ୍ୟ ବୃଦ୍ଧି ପାଇବ । ଗୁରୁଙ୍କୁ ଶିଷ୍ୟମାନେ ଗୁରୁ ଦକ୍ଷିଣା ମଧ୍ୟ ଦେବେ ନାହିଁ ।

---

† ବଙ୍ଗ ରାଜା ଓଡ଼ିଶାରେ ପଶିବ ଝସାଇ,
ବାଜିବ ପଶ୍ଚିମେ ମାଡ଼ ନ ରହିବେ କେହି ।
ଋଷି କୋଇଲିରୁ ଯେ ସୁବର୍ଣ୍ଣ ରେଖା ନଈ,
ରହିବେ ଦନୁଜ ବଳ କଳନା ନ ଯାଇ ।
ରକତ ନଦୀ ବହିବ ଘୋଡ଼ାର ଚିକର,
ରାଜାମାନେ ବିନା ଯୁଦ୍ଧେ ଯାଉଥିବେ ମାରି ।
ଲକ୍ଷ୍ମୀ ଘେରିଲ ପ୍ରାନ୍ତେ ରହିବେ ଯବନ,
କୁହାପାତେ ଅଗ୍ନି ଯେ ଉଠିବ ହୁତାସନ ।
(ଯଶୋବନ୍ତ ଗୋସାଇଁଙ୍କ ଭବିଷ୍ୟ ଟୀକା)

†† ଭୂମି ନାଶ ଯିବ ନକ୍ଷେତ୍ର ହୋଇ, ବେଦ ଋଷି ଭୁଲେ ମୂଳ ଲେଖାଇଂ ।
ଥିଏ ନୋହିବ ଏତେ ଧନ ମଧ୍ୟେ, ଶନିଶ୍ଚର ଥିବ କୁମ୍ଭରେ ସାଧ୍ୟେଂ
ନୋହିଲେ ମୀନରେ ବକ୍ର ହୋଇବ, ଦକ୍ଷିଣକଇ ମତି ଚଳାଇବ ।
ନୈଋତ କୋଣରେ ଭେଟିବ ଯାଇଂ, ଧବଳଗିରି ଐଶାନ୍ୟରେ ରହି ।"
(ଯଶୋବନ୍ତ ଗୋସାଇଂକ ଭବିଷ୍ୟଟୀକା)

ମାନବର ଭବିଷ୍ୟତ ଯେପରି ଅଜ୍ଞାତ, ଅତୀତ ମଧ୍ୟ ସେହିପରି ରହସ୍ୟାବୃତ । ପୂର୍ବ ଜନ୍ମରେ କିଏ କି ଜନ୍ମ ଲାଭ କରି ଥିଲେ ତାହା ସାଧାରଣ ବ୍ୟକ୍ତି ପକ୍ଷରେ ଜାଣିବା କଷ୍ଟକର ବ୍ୟାପାର । ସାଧୁ ସନ୍ଥ ଦିବ୍ୟ ଦୃଷ୍ଟିରେ ତାହା ଦର୍ଶନ କରି ପାରନ୍ତି । ତେଣୁ ମାଳିକାରେ ପୂର୍ବଜନ୍ମ ବିଷୟ ମଧ୍ୟ କଥିତ ହୋଇଛି । ପଞ୍ଚସଖାଙ୍କ ଆବିର୍ଭାବ ବିଷୟରେ ମାଳିକାରେ ଉଲ୍ଲେଖ ଅଛି ଯେ ସେମାନେ ଗୋଲକପୁରରେ ଥିଲେ । ଉତ୍କଳ ଭୂମିର ଭାର ଲାଘବ କରିବା ପାଇଁ ଜନ୍ମ ଗ୍ରହଣ କରିଛନ୍ତି । ଏ ରହସ୍ୟ ସମସ୍ତେ ଜାଣନ୍ତି ନାହିଁ । ଯଶୋବନ୍ତ ପ୍ରକାଶ କରିଛନ୍ତି ଯେ ଏହା ଶିଶୁବେଦରେ ସଂଗୁପ୍ତ ରହିଛି । ସାଧୁମାନଙ୍କର ହିତ ସାଧନ ଉଦ୍ଦେଶ୍ୟରେ ଏହାକୁ ମନରେ ଧରଣ କରି ଏହି କ୍ଷେତ୍ର ଟୀକା ସେ ରଚନା କରିଛନ୍ତି । ମାଳିକାର ପରିଶେଷରେ କବି ତାଙ୍କ ଶିଷ୍ୟ ଲୋଇ ଦାସଙ୍କୁ କଳି ଯୁଗର ଅନୀତି ବିଷୟରେ ସୂଚନା ଦେଇଛନ୍ତି । † ମାଳିକାଗୁଡ଼ିକର ଭାଷା ସରଳ ଓ ସର୍ବଜନଗ୍ରାହ୍ୟ ।

ଯଶୋବନ୍ତ ଦାସଙ୍କ ରଚିତ 'ରାସ' ଏକ କ୍ଷୁଦ୍ର ପୁସ୍ତକ । କବି ରାସକୁ ମାନବ ଶରୀରଠାରେ ଆରୋପ କରିଛନ୍ତି । ଉତ୍କଳୀୟମାନଙ୍କ ମତରେ ମନୁଷ୍ୟର ଲଲାଟ ସ୍ଥଳରେ ବୃନ୍ଦାବନ କ୍ଷେତ୍ର ଅବସ୍ଥିତ । ସେଠାରେ ଶ୍ରୀକୃଷ୍ଣ, ଗୋପୀମାନଙ୍କ ସହ ନିତ୍ୟ ରାସରେ ନିଯୁକ୍ତ । ଶରୀର ମଧ୍ୟରେ ସେହି ରାସକୁ ଦର୍ଶନ କରି ଅପ୍ରାକୃତ ପ୍ରେମକୁ ଉପଲବ୍ଧି କରିବାହିଁ ପ୍ରକୃତ ଭକ୍ତ ।

ଏତଦ୍‌ବ୍ୟତୀତ ଯଶୋବନ୍ତଙ୍କର ଅନ୍ୟାନ୍ୟ ଅନେକ ରଚନା ରହିଥିବା ଜଣାଯାଏ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅନୁଧ୍ୟାନରୁ ଜଣାଯାଏ ଯେ ଧାନଗ୍ରେରି, ବାଘଲୀଳା, ହେତୁଦୟ ଭାଗବତ ଓ ବହୁ ଭଜନ ରଚନା କରିଛନ୍ତି । ମାତ୍ର ସେ ସମସ୍ତ ଲୋକ ଲୋଚନକୁ ଆସି ପାରି ନାହିଁ । ତାଙ୍କର ଅପ୍ରକାଶିତ ରଚନା 'ଆତ୍ମପରଚେ ଗୀତା' ଓ 'ବଣଭୋଜି ବୋଲି' ସଂପର୍କରେ ଡଃ ବଂଶୀଧର ମହାନ୍ତି କିଛି ଆଲୋଚନା କରିଛନ୍ତି । ଅଚ୍ୟୁତାନନ୍ଦ ଓ ଯଶୋବନ୍ତଙ୍କ ବହୁ ଭଜନ ପୁରପଲ୍ଲୀରେ ଲୋକେ ଖଞ୍ଜଣି ବଜାଇ ବୋଲୁଥିବାର ଶୁଣାଯାଏ । ମାତ୍ର ସେ ସମସ୍ତ ଭଜନ ମୁଦ୍ରିତ ଅକ୍ଷରରେ ଦେଖିବାକୁ

---

† ଅନେକ ଅନୀତି ହୋଇବ ମହୀ, କେହି କାହାକୁ ପ୍ରତେ ଯିବେ ନାହିଁ ।
ଇନ୍ଦ୍ର ପାଳିବ ଶସ୍ୟ ଯେ ନୋହିବ, ଖଣ୍ଡ ପାଳିକ ମେଘ କରୁଥିବ ।

× × × × × ×

ଦିବସେ ଉଦିତ ହୋଇବ ତାରା, ପ୍ରଚଣ୍ଡ ହୋଇବ ରବିର ଖରା ।
ପବନ ବହିବ ନିର୍ଘାତ କରି, ବସିଲଠାରେ ଦ୍ରବ୍ୟ ଯିବ ଗ୍ରେରି ।

(ଯଶୋବନ୍ତଙ୍କ ଭବିଷ୍ୟ ଟୀକା)

ମିଳେ ନାହିଁ । ତେଣୁ କେଉଁ ଭଜନଗୁଡ଼ିକ ଯଶୋବନ୍ତଙ୍କର ରଚନା ତାହା ଠିକ୍ ଭାବରେ ଜାଣିବା ସହଜସାଧ୍ୟ ନୁହେଁ ।

**ଭାଷା, ଛନ୍ଦ ଓ କାବ୍ୟରୀତି** :—ସନ୍ଥକବିଙ୍କ ରଚନାମାନ ଅନୁଧ୍ୟାନ କଲେ, ତତ୍କାଳୀନ ସାହିତ୍ୟରେ ପ୍ରୟୋଗ ହେଉଥିବା ଭାଷାର ସ୍ୱରୂପ ଜାଣିହୁଏ । ପଞ୍ଚସଖା, କଠିନ ତତ୍ତ୍ୱପୂର୍ଣ୍ଣ କଥାଗୁଡ଼ିଏ କହିଥିଲେ ମଧ୍ୟ ତାଙ୍କର ଭାଷା ଓ ପ୍ରକାଶ କରିବାର ଭଂଗୀ ସହଜ । ଜନ ସାଧାରଣର ଭାଷାରେ ସେମାନେ ନିଜର କଥାଗୁଡ଼ାକୁ କହି ପାରିଥିବାରୁ ତାହା ସର୍ବଜନ ବୋଧ୍ୟ ହୋଇ ପାରିଛି । ଏମାନେ ସମସ୍ତେ ଥିଲେ ସଂସ୍କୃତଜ୍ଞ । ଜଗନ୍ନାଥ ଦାସଙ୍କ 'ଭାଗବତ' କିମ୍ବା ଯଶୋବନ୍ତ ଦାସଙ୍କ 'ଶିବ ସ୍ୱରୋଦୟ' ସଂସ୍କୃତ ଗ୍ରନ୍ଥର ଅବଲମ୍ବନରେ ଲିଖିତ ହେଲେହେଁ ତାହା କବିଙ୍କ ମୌଳିକ ରଚନା ପରି ମନେହୁଏ ।

ଅନ୍ୟଭାଷାର ସଂପଦରେ ନିଜ ଭାଷାକୁ ସମୃଦ୍ଧ କରିବା ଏକ କଳା । ଏହି କଳାର ଅଭାବରେ ସଂସ୍କୃତ ବା ଅନ୍ୟ ଯେକୌଣସି ଭାଷା, ନିଜ ପରିବାରକୁ ଆସିଲେ ମଧ୍ୟ ତାହା ସେଠାରେ କୁଣିଆ ହୋଇ ରହିଯାଏ । ଆପଣାର ହୋଇ ପାରେ ନାହିଁ । ଆପଣା କଥାଗୁଡ଼ାକ ଅନ୍ୟ ଭାଷାରେ ଭାରି ଅଡୁଆ ଲାଗେ । ସନ୍ଥକବିଗଣ ଏ ପ୍ରକାର ପ୍ରମାଦରୁ ମୁକ୍ତ ଥିଲେ । 'ଗୀତ ଗୋବିନ୍ଦଚନ୍ଦ୍ର' ପୁସ୍ତକଟି ଏହାର ଏକ ଉତ୍କୃଷ୍ଟ ଉଦାହରଣ । କବି ଯଶୋବନ୍ତ ଏଥିରେ ସର୍ବଜନଗ୍ରାହ୍ୟ ଅତି ସାଧାରଣ ଭାଷା ପ୍ରୟୋଗ କରିଛନ୍ତି । କବି 'ଶିବ ସ୍ୱରୋଦୟ'ରେ ସ୍ୱୀକାର କରିଛନ୍ତି—"ପ୍ରାକୃତ ବନ୍ଧେ ପଦ ଏ ଦେଶି ଭାଷାରେ, କରିବି ଶ୍ଳୋକ ଅର୍ଥକୁ ସମ୍ପୂର୍ଣ୍ଣ ଆଶାରେ ।" ସଂସ୍କୃତ ଭାଷାର କ୍ଲିଷ୍ଟତାରୁ ନିଜ କାବ୍ୟକୁ ମୁକ୍ତ କରିବା ଯେ ଯଶୋବନ୍ତଙ୍କର ଲକ୍ଷ୍ୟ ଥିଲା ତାହା ଏଥିରୁ ଅନୁମିତ ହୁଏ । ଏତଦ୍-ବ୍ୟତୀତ ତତ୍କାଳୀନ ଭାଷାର ସ୍ୱରୂପ କଳନା କରିବାରେ ଏହା ସହାୟକ ହୋଇଛି । କେତେକ ଶବ୍ଦରେ 'ନ୍ତି', 'କ', 'ର', 'ସି' ଇତ୍ୟାଦି ଗୋଟିଏ ଗୋଟିଏ ବର୍ଣ୍ଣ ସଂଯୋଗ ହୋଇଥିବା ଲକ୍ଷ୍ୟ କରାଯାଏ । ତହିଁର କେତେକ ଉଦାହରଣ ପ୍ରଦତ୍ତ ହେଲା । ହୋଇଲା– ହୋଇଲାକ, କରିବା—କରିବାକ, ଖଟିବେ—ଖଟିବେକ ଖଣ୍ଡିଏ– ଖଣ୍ଡିଏକ ଯାଚିଲା—ଯାଚିଲାର, ପୋଡିଲା—ପୋଡିଲାର, ନିଅ—ନିଅସି, କାଢ଼– କାଢ଼ସି ଶୁଣ— ଶୁଣସି । 'ନ୍ତି' ଯୋଗ କରି ନାରିମାନନ୍ତି, ପୁହିନ୍ତି ପ୍ରଭୃତି ଶବ୍ଦ ବ୍ୟବହାର କରିଥିବା ଲକ୍ଷ୍ୟ କରାଯାଏ । ଏତଦ୍ବ୍ୟତୀତ ପ୍ରାଚୀନ ଯୁଗରେ ବ୍ୟବହୃତ ହୋଇଥିବା କେତେକ ଶବ୍ଦ ଏଥିରେ ଦେଖିବାକୁ ମିଳେ । ହେଠମାଥ, ଛଛନ୍ଦ୍ରେ, ଲେହୁଲି, ମୁହାଂସ, ଛଡ଼ନ୍ତି, କାଙ୍ଗୁଲି, ମରଡ଼ାଶାଳ, ନିର୍ଭାକଲା, ନିରେଳ, ଲୁକୁ ପ୍ରଭୃତି ପ୍ରାଚୀନ ଶବ୍ଦ ଏଥିରେ ସ୍ଥାନ ପାଇଛି । ଆଧୁନିକ ସାହିତ୍ୟରେ ଏପରି ଶବ୍ଦ ପ୍ରାୟ ଦେଖିବାକୁ ମିଳେ ନାହିଁ । ମନେହୁଏ ଅନେକ ସମୟରେ କବି ପଦ ପଢ଼ିବା ପାଇଁ ବା ଯତିପାତ ହେବା ଲକ୍ଷ୍ୟରେ କେତେକ

ଶବ୍ଦ ଧାର କରିଛନ୍ତି । ଉଦାହରଣ ସ୍ୱରୂପ 'ରସୁଣୀ' ଶବ୍ଦଟିକୁ ଗ୍ରହଣ କରାଯାଇ ପାରେ । ରସୁଣୀକୁ ରମଣୀ ଅର୍ଥରେ କବି ବ୍ୟବହାର କରିଛନ୍ତି । ଏହା ରାଣୀ ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଥାଇ ପାରେ । * କେତେକ ଶବ୍ଦର ଅପଭ୍ରଂଶ ରୂପ ମଧ୍ୟ ଦେଖିବାକୁ ମିଳେ । ଯେପରି ଅପ୍‌ସରା—ଅପଛରା, ହାତ – ହାଥ, ଷରୁଛି—ଛରୁଛି, ଶୋଇବୁ – ଶୁଇବୁ, ବିନାକେ—ବ୍ୟତୀତ, ପ୍ରସନ୍ନ – ପ୍ରଛନ୍ନ ପ୍ରଭୃତି କେତୋଟି ଶବ୍ଦ ଦେଖିବାକୁ ମିଳେ । ଏହି ଶବ୍ଦଗୁଡ଼ିକୁ ଭିତ୍ତିକରି ଯଶୋବନ୍ତଙ୍କ ସାହିତ୍ୟକୃତିକୁ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ମୂଲ୍ୟାୟନ କରାଯାଇ ପାରେ ।

ଷୋଡ଼ଶ ଶତାବ୍ଦୀ ବେଳକୁ ସାରଳା ଦାସଙ୍କ ଦାଣ୍ଡିବୃତ୍ତ ଓ ଭାଗବତର ନବାକ୍ଷରୀ ବୃତ୍ତ ବିଶେଷ ଭାବରେ ପ୍ରଚଳିତ ଓ ଆଦୃତ ହୋଇଥିଲା । ଯଶୋବନ୍ତଙ୍କ ରଚିତ କାବ୍ୟ-ଗୁଡ଼ିକରେ ଏହି ଛନ୍ଦ ବ୍ୟବହୃତ ହୋଇଥିବା ପରିଲକ୍ଷିତ ହୁଏ । 'ଗୀତ ଗୋବିନ୍ଦଚନ୍ଦ୍ର'ରେ କବି ପ୍ରାୟ ଚତୁର୍ଦ୍ଦଶ ଅକ୍ଷର ଯୁକ୍ତ ପଦ ସଂଯୋଜନା କରିଛନ୍ତି । କେତେବେଳେ କେମିତି ଏହା ଚଉଦ ଅକ୍ଷରରୁ ଅଧିକ ମଧ୍ୟ ହୋଇ ଯାଇଛି । ଏପରିକି କୋଡ଼ିଏ ବା ବାଇଶି ପର୍ଯ୍ୟନ୍ତ ଅକ୍ଷର ସଂଖ୍ୟା ବଢ଼ି ଯାଇଛି । 'ଶିବ ସ୍ୱରୋଦୟ'ରେ ମଧ୍ୟ ଚଉଦ ଅକ୍ଷର ବିଶିଷ୍ଟ ପଦ ସଂଯୋଜନା କରାଯାଇଛି । 'ପ୍ରେମ ଭକ୍ତି ବ୍ରହ୍ମଗୀତା' କିନ୍ତୁ ନବାକ୍ଷରୀ ବୃତ୍ତରେ ରଚିତ । ଯଶୋବନ୍ତଙ୍କ 'ବଣଭୋଜି ବୋଲି'ରେ ଏଗାର ଅକ୍ଷର ବିଶିଷ୍ଟ ପଦ ସଂଯୋଜନା କରାଯାଇଛି । ଯଶୋବନ୍ତଙ୍କ ସାହିତ୍ୟ କୃତିର ପର୍ଯ୍ୟାଲୋଚନା କଲେ ଜଣାଯାଏ, ସେ ପ୍ରତ୍ୟେକ ପୁସ୍ତକକୁ ଗୋଟିଏ ଲେଖାଏଁ ଛନ୍ଦରେ ଲିପିବଦ୍ଧ କରିଛନ୍ତି, ରୀତିଯୁଗୀୟ କବି-ମାନଙ୍କ ପରି ପ୍ରତ୍ୟେକ ସର୍ଗପାଇଁ ପୃଥକ ପୃଥକ ଛନ୍ଦ ବ୍ୟବହାର କରି ନାହାନ୍ତି । ଏ ସମସ୍ତ କୃତି ମଧ୍ୟରେ 'ଗୀତ ଗୋବିନ୍ଦଚନ୍ଦ୍ର' ଅଧିକ ଲୋକପ୍ରିୟ, ଯୋଗୀମାନେ ଏହାକୁ ଗାନ କରିବାର ଦେଖାଯାଏ । ସାଙ୍ଗୀତିକତା ଅପେକ୍ଷା, ବିଷୟବସ୍ତୁ ଓ ଚରିତ୍ର ଚିତ୍ରଣ ପାଇଁ ଏହା ଅଧିକ ଆଦୃତ ହୋଇଥିବା ମନେହୁଏ ।

ଓଡ଼ିଆ କାବ୍ୟର ଗଠନ ରୀତି ସମ୍ପର୍କରେ ଅନୁଧ୍ୟାନ କଲେ ଜଣାଯାଏ, "ଓଡ଼ିଆ କାବ୍ୟର ଅଭ୍ୟୁଦୟ ବେଳକୁ ସଂସ୍କୃତ ସାହିତ୍ୟ, ପ୍ରାକୃତ ଅପଭ୍ରଂଶ ଭାଷା ଉପରେ ପ୍ରଭାବ

---

* ପଲଙ୍କେ କଟାଇ ଦେହ ଶୁଣସି ଗୋ ରାଣୀ
ଶରୀରର ନିଦ୍ରା ମୋର ନ ମାଡ଼େ ରସୁଣୀ
× × × ×
ପ୍ରବାସରେ ସେବା କରୁଥିବୁ ମନ ଜାଣି
ଶଯ୍ୟା ଛାଡ଼ି ଆନଠାରେ ଶୁଇବୁ ରସୁଣୀ ।
(ଗୋବିନ୍ଦଚନ୍ଦ୍ର—ପୃ ୮୪)

ବିସ୍ତାର କରି ସାରି ଓଡ଼ିଆ ଭାଷା ଭିତରେ ଆତ୍ମପ୍ରକାଶ କରିଥିଲା, ଫଳରେ ଓଡ଼ିଆ ଭାଷା ନିଜର ଏକ ସଫଳ ସାହିତ୍ୟିକ ଭାବମୂର୍ତ୍ତି ଆହରଣରେ ସେତେବେଳେ ଥିଲା ସମ୍ପୂର୍ଣ୍ଣ ସମର୍ଥ ।" † ଏହି ପରମ୍ପରା ହେତୁ ଓଡ଼ିଆ ସାହିତ୍ୟର ଆଦି କାଳରେ ପୁରାଣ ଶୈଳୀରେ ରଚିତ ଧର୍ମ ସାହିତ୍ୟ ଓ କାବ୍ୟ ସାହିତ୍ୟ ଏହି ଦୁଇଟି ବିଭାଗର ସୃଷ୍ଟି ହେଲା । ତେଣୁ ଉଭୟ ପ୍ରକାର ସାହିତ୍ୟରେ ପୁରାଣର ପ୍ରଭାବ ସୁସ୍ପଷ୍ଟ ପୁରାଣର ବିଷୟବସ୍ତୁ ପ୍ରାୟତଃ ସମ୍ବାଦ ଶୈଳୀରେ ପରିବେଷଣ କରାଯାଇଥାଏ । ଜଣେ ଶ୍ରୋତା, ବକ୍ତାଙ୍କଠାରୁ କିଛି ଜାଣିବାକୁ ଇଚ୍ଛା କରନ୍ତି ଏବଂ ବକ୍ତା ତାହା ବ୍ୟକ୍ତ କରନ୍ତି । ପୁରାଣର ଏହି ବକ୍ତା-ଶ୍ରୋତା ଶୈଳୀ ଅନେକ ଓଡ଼ିଆ କାବ୍ୟରେ ଅବଲମ୍ବିତ ହୋଇଥିବା ଲକ୍ଷ୍ୟ କରାଯାଏ । ଯଶୋବନ୍ତଙ୍କ ରଚିତ କାବ୍ୟଗୁଡ଼ିକରେ ପ୍ରାୟ ଏହି ନିୟମ ରକ୍ଷା କରାଯାଇଛି । 'ଗୀତ ଗୋବିନ୍ଦଚନ୍ଦ୍ର'ରେ ଜଣେ ସ୍ୱର୍ଗବାସୀ, ଗୋବିନ୍ଦଚନ୍ଦ୍ର ରାଜା କାହାକୁ ସେବାକରି ଅମର ହେଲେ ଜାଣିବା ପାଇଁ ଦୁର୍ବାସାଙ୍କୁ ପଚାରିଛନ୍ତି । ଦୁର୍ବାସା, ଯୋଗଜ୍ଞାନ ସମ୍ପର୍କରେ କହିବାକୁ ଯାଇ ଗୋବିନ୍ଦଚନ୍ଦ୍ରଙ୍କ ବିଷୟ ବର୍ଣ୍ଣନା କରିଛନ୍ତି ଓ ଶ୍ରୋତା ଜଣକ ତାହା ଶ୍ରବଣ କରିଛନ୍ତି । * 'ଶିବ ସ୍ୱରୋଦୟ'ରେ ମଧ୍ୟ କବି କଥୋପକଥନ ଛଳରେ ବିଷୟବସ୍ତୁର ଉପସ୍ଥାପନା କରିଛନ୍ତି । ପାର୍ବତୀ, ସ୍ୱରୋଦୟ ଶାସ୍ତ୍ର ସମ୍ପର୍କରେ ଜାଣିବା ପାଇଁ ଶିବଙ୍କୁ ପ୍ରାର୍ଥନା କରିଛନ୍ତି ଏବଂ ଶିବ ସ୍ୱରୋଦୟ ଶାସ୍ତ୍ର ବିଷୟରେ ଯାହା ବ୍ୟକ୍ତ କରିଛନ୍ତି ତାହାହିଁ ସେ ପୁସ୍ତକର ବିଷୟବସ୍ତୁ । † 'ପ୍ରେମ ଭକ୍ତି-ବ୍ରହ୍ମଗୀତା'ରେ ମଧ୍ୟ ସମ୍ବାଦ ପରିବେଷଣ ଶୈଳୀରେ ବିଷୟ ବସ୍ତୁର ଉପସ୍ଥାପନା କରା-

---

† ତତ୍ତ୍ୱର ପ୍ରଦର୍ଶନ ଆଗ୍ରହୀ—ଓଡ଼ିଆ କାବ୍ୟ କୌଶଳ—୧୯୮୩-ପୃଷ୍ଠା—୭୪

* ଏଥି ଅନନ୍ତରେ ଯେ ପରମ ସ୍ୱର୍ଗବାସୀ,
ଦୁର୍ବାସାଙ୍କ ପାଦତଳେ ମସ୍ତକ ନିବେଶି ।
ଭୋ ମୁନି ଗୋବିନ୍ଦଚନ୍ଦ୍ର ରାଜା ଯେହୁ ଥିଲେ,
କାହାକୁ ସେ ସେବାକରି ଅମର ହୋଇଲେ ।
ଶୁଣିବାକୁ ଇଚ୍ଛା ବଡ଼ ହେଉଛି ମୋହର,
ଯୋଗ ଜ୍ଞାନ ଫେଡ଼ି ମୁନି କହନ୍ତୁ ବିସ୍ତାର ।
ଦୁର୍ବାସା ବୋଇଲେ ବାବୁ ଶୁଣ ଶୁଦ୍ଧହିଆ,
ତୁ ଯା ପଚାରିଲୁ ସାବଧାନେ ଶୁଣ ତାହା । (ଗୋବିନ୍ଦଚନ୍ଦ୍ର—ପଦ ୭-୧୦)

† ପାର୍ବତୀ ମହା ଦେବଙ୍କୁ ବହୁ ସ୍ତୁତି କରି,
ବୋଲନ୍ତି ହେ ଦେବ ଦେବ କୃପା ମୋତେ କର ।
କହିବ ସର୍ବସିଦ୍ଧି କରତା ସ୍ୱରଜ୍ଞାନ,
ଶୁଣିଲେ ମୋ ଚିତ୍ତରୁ ଯେ ସଂଶ ଦହନ । (ଶି. ସ୍ୱ.-ପଦ ୧୬-୧୭)

ଯାଇଛି । ଶ୍ରୀ ରାଧା ଓ ଶ୍ରୀ କୃଷ୍ଣଙ୍କ ତତ୍ତ୍ୱପୂର୍ଣ୍ଣ ଚରିତ ଜାଣିବା ପାଇଁ ଅର୍ଜୁନ, ଶ୍ରୀକୃଷ୍ଣଙ୍କ ପାଦ ଧରି ପଗ୍ଲରିଛନ୍ତି † ଶ୍ରୀ କୃଷ୍ଣ ମଧ୍ୟ ଅର୍ଜୁନଙ୍କୁ ତୋଳାଧରି ବସନରେ ତାଙ୍କ ଦେହକୁ ପୋଛି ଦେଇ ନିଜ କୋଳରେ ବସାଇ ଅତି ଆଦରରେ ରାଧା-କୃଷ୍ଣ ଜନ୍ମ ରହସ୍ୟ କହିଛନ୍ତି । ଏ ସବୁ ଦୃଷ୍ଟାନ୍ତରୁ ଜଣାଯାଏ ଯେ ଯଶୋବନ୍ତ ପୁରାଣ ପଦ୍ଧତି ଅନୁସାରେ ତାଙ୍କ ରଚନାଗୁଡ଼ିକୁ କଥୋପକଥନ ଭଙ୍ଗୀରେ ହିଁ ଉପସ୍ଥାପନା କରିଛନ୍ତି ।

କାବ୍ୟ ସାହିତ୍ୟର ଆଦ୍ୟ ଯୁଗରୁ ଅନ୍ୟ ଏକ ପରମ୍ପରା ବିଦ୍ୟମାନ ଥିବା ଲକ୍ଷ୍ୟ କରାଯାଏ । କବି ଇଷ୍ଟଦେବଙ୍କୁ ସ୍ତୁତି କରି କାବ୍ୟ ଆରମ୍ଭ କରନ୍ତି । 'ଗୀତ ଗୋବିନ୍ଦ ଚନ୍ଦ୍ର'ରେ ଯଶୋବନ୍ତ ମଧ୍ୟ ଗଣେଶଙ୍କୁ ସ୍ତୁତି କରିଛନ୍ତି । † ସ୍ତୁତି ଛଳରେ ଗଜେନ୍ଦ୍ର ବଦନ ଲମ୍ବୋଦର, ଭଗ୍ନଦନ୍ତ, ଜଟାଧାରୀ ଲଲାଟରେ ଚନ୍ଦ୍ର ଶୋଭିତ, ଅମୃତ ଲଡ଼ୁଧାରୀ, ଗୌରୀ ନନ୍ଦନ, ଗଣେଶଙ୍କର ରୂପ ବର୍ଣ୍ଣନା କରିଛନ୍ତି । ବର୍ଣ୍ଣନା ପ୍ରୀତି ସେ ଯୁଗର କବି-ମାନଙ୍କର ଏକ ବିଶେଷତ୍ୱ । ଯଶୋବନ୍ତଙ୍କ ରଚନାରେ ବର୍ଣ୍ଣନାର ବାହୁଲ୍ୟ ଅବଶ୍ୟ ନାହିଁ । ତଥାପି ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନା ଦେବାଦେବୀଙ୍କ ରୂପ ବର୍ଣ୍ଣନା ଓ କେତେକ ଚରିତ୍ର ବର୍ଣ୍ଣନା କରିବାରେ କବି ନ୍ୟୂନତା ପ୍ରକାଶ କରି ନାହାନ୍ତି । 'ଶିବସ୍ୱରୋଦୟ'ରେ ମଧ୍ୟ କବି ତତ୍ତୁଲ୍ୟ ଭାବରେ ଇଷ୍ଟସ୍ତୁତି କରି ଗ୍ରନ୍ଥ ରଚନା ଆରମ୍ଭ କରିଛନ୍ତି । ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଓ ବିଘ୍ନରାଜ ଗଣେଶଙ୍କୁ ସ୍ତୁତି କରିଛନ୍ତି ତାଙ୍କର ଗ୍ରନ୍ଥ ରଚନା ନିର୍ବିଘ୍ନରେ ସମାପ୍ତ ହେବା ପାଇଁ । 'ପ୍ରେମଭକ୍ତି ବ୍ରହ୍ମଗୀତା'ର ଆରମ୍ଭ ଯଶୋବନ୍ତ ଦାସ, ଜଗନ୍ନାଥ, ମହେଶ୍ୱର, ବାକ୍ୟଦେବୀ ଓ ଗଣନାଥଙ୍କୁ ବନ୍ଦନା କରିଛନ୍ତି । କାବ୍ୟ ଯୁଗର ପ୍ରାରମ୍ଭରୁ ଇଷ୍ଟସ୍ତୁତି କରିବାର ପରମ୍ପରା ରହି ଆସିଛି । ଏପରିକି ଆଧୁନିକ ଯୁଗର କେତେକ କବି ମଧ୍ୟ ଏହି ରୀତି ଅବଲମ୍ବନ କରିଛନ୍ତି । କବି ଗଙ୍ଗାଧର ବାକଦେବୀଙ୍କୁ ସ୍ମରଣ କରି ତପସ୍ୱିନୀ କାବ୍ୟ ରଚନା ଆରମ୍ଭ କରିଛନ୍ତି । ତେଣୁ ପ୍ରାଚୀନ ଯୁଗର କାବ୍ୟର ଗଠନ କୌଶଳ ବିଷୟ ଜାଣିବାରେ ଯଶୋବନ୍ତ ଦାସଙ୍କ ରଚନା ସହାୟକ ହୁଏ ।

---

† ଅର୍ଜୁନ ବେନି କର ଯୋଡ଼ି, ଶ୍ରୀକୃଷ୍ଣ ଶ୍ରୀ ପାଦରେ ପଡ଼ି ।
ବୋଲେ ଶୁଣିବା ଭଗବାନ, ଯେ ଅଛି ସଂଶୟ ମୋ ମନ ।
ତୁମ୍ଭ ଶ୍ରୀ ଚରଣେ ପୁଛଇ, ପ୍ରସନ୍ନେ କହିବା ଗୋସାଇଁ ।

(ପ୍ରେମଭକ୍ତି—ବ୍ରହ୍ମଗୀତା—ପଦ ୬-୮)

† ତୋହର ଚରଣ ତଳେ ଲୁଣ୍ଠୁ ମୋର ମାଥ,
ତବ ପରସନ୍ନେ ପଦ କରିବା ଭକତ ।

(ଗୋବିନ୍ଦଚନ୍ଦ—ପଦ ୬)

**ଉପସଂହାର :**—ଧର୍ମ, ଦର୍ଶନ, ସାହିତ୍ୟ ଓ ସାଂସ୍କୃତିକ ପୃଷ୍ଠଭୂମିରେ ଯଶୋବନ୍ତଙ୍କ ରଚନାଗୁଡ଼ିକୁ ଆଲୋଚନା କଲେ ଏଗୁଡ଼ିକର ଉପାଦେୟତା ଅନୁଭୂତ ହୁଏ । ଆଧ୍ୟାତ୍ମିକ ଚେତନା, ସମାଜ ସଚେତନତା ଓ ଧର୍ମମତ ଇତ୍ୟାଦିର ପରି-ପ୍ରକାଶରେ ପଞ୍ଚସଖାଙ୍କର ମୌଳିକତା ଅତ୍ୟନ୍ତ ଅଭିନନ୍ଦନୀୟ । କିନ୍ତୁ ପ୍ରସାର ଓ ପ୍ରଚାର ମନୋଭାବ ଅଭାବରୁ ପଞ୍ଚସଖାଙ୍କ ଅପେକ୍ଷା ଶ୍ରୀ ଚୈତନ୍ୟ ଅଧିକ ସ୍ୱୀକୃତି ପାଇଲେ । ଏପରିକି କେତେକ ଲେଖାରେ ମଧ୍ୟ ପଞ୍ଚସଖାଙ୍କ ପରିବର୍ତ୍ତେ ଶ୍ରୀ ଚୈତନ୍ୟଙ୍କୁ ସ୍ୱୀକୃତି ମିଳିଲା । କେତେକ ସମାଲୋଚକଙ୍କ ମତରେ ବଙ୍ଗୀୟ ଅନୁଗାମୀଙ୍କ ଉଦ୍ଦେଶ୍ୟରେ ଜଗନ୍ନାଥ ଦାସ ଲେଖିଥିବା ଅଷ୍ଟଶ୍ଳୋକ ବିଶିଷ୍ଟ ଚଉଁଶାଉତି ପରବର୍ତ୍ତୀ ସମୟରେ ଶ୍ରୀ ଚୈତନ୍ୟଙ୍କ ରଚନା ବୋଲି ଗୃହୀତ ହେଲା । † ଜାତିଭେଦ ଉଠାଇବା, ନାରୀ ସ୍ୱାଧୀନତା ଆଣିବା ଇତ୍ୟାଦି କେତେକ ଦିଗରେ ପଞ୍ଚସଖାଙ୍କର ପଦକ୍ଷେପ ଅଭିନନ୍ଦନୀୟ । ସାମନ୍ତଶାସିତ ସମାଜରେ ତାହା ପରବର୍ତ୍ତୀ ସମୟରେ ଅଧିକ କାର୍ଯ୍ୟକାରୀ ହୋଇ ପାରି ନ ଥିଲେ ମଧ୍ୟ ତତ୍‌କାଳୀନ ସମାଜରେ ବେଶ୍ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ମହାମନ୍ତ୍ରକୁ କେନ୍ଦ୍ରକରି ଯେତେବେଳେ ଯେଉଁ ବିବାଦ ସୃଷ୍ଟି ହୋଇଥିଲା ସେଥିରେ ପଞ୍ଚସଖାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଉତ୍କଳୀୟ ବୈଷ୍ଣବମାନଙ୍କ ସହିତ ପଞ୍ଚସଖା ହିଁ 'ହରେ ରାମ ମନ୍ତ୍ର'କୁ ଶ୍ରୀ ଚୈତନ୍ୟଙ୍କ ଦ୍ୱାରା ଅନୁମୋଦିତ କରାଇଥିଲେ । 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରୁ ଜଣାଯାଏ କବୀର ପୁରୀ ଆସି ପଞ୍ଚସଖାଙ୍କୁ ଭେଟିଥିଲେ ଏବଂ ଜଗନ୍ନାଥ ଦାସ ଓ କବୀରଙ୍କ ମଧ୍ୟରେ ଅନେକ ବିଷୟରେ ତାତ୍ତ୍ୱିକ ଆଲୋଚନା ହୋଇଥିଲା । ଦାସେ କବୀରଙ୍କୁ 'ମୁକତି ବାଞ୍ଛା ନକରିଲ୍ୟ' ବୋଲି ମତ ବ୍ୟକ୍ତ କରିଥିଲେ । ପରବର୍ତ୍ତୀ ସମୟରେ ଏହା ଗୌଡ଼ର ଓ ବୃନ୍ଦାବନର ବୈଷ୍ଣବତତ୍ତ୍ୱ ଦର୍ଶନ ଜଗତରେ ମୁଖ୍ୟସ୍ଥାନ ପାଇଥିବା ଜଣାଯାଏ । ମାତ୍ର ଏହି ବୈଷ୍ଣବିକ ମତବାଦର ପ୍ରଥମ ଉଦ୍‌ଗାତା ଯେ ଜଗନ୍ନାଥ ଦାସ ଏହା କେହି କେଉଁଠି କହିଲେ ନାହିଁ ।" †† ଏଥିରୁ ପଞ୍ଚସଖାଙ୍କର ମୌଳିକ ଚିନ୍ତାଧାରାର ପରିଚୟ ମିଳେ ।

---

† ବୈଷ୍ଣବ ଲୀଳାମୃତ—ମାଧବ ପଟ୍ଟନାୟକ ।
ସଂପାଦନା—ଘନଶ୍ୟାମ ରଥ ଓ ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
ପ୍ରଦୀପ ପବ୍ଲିକେଶନ—ଆନନ୍ଦ ବୁକ୍‌ସହଲ୍—ସଂବଲପୁର

†† ବୈଷ୍ଣବ ଲୀଳାମୃତ - ପୃଷ୍ଠା - ୩୯

ଯଶୋବନ୍ତ ମଧ୍ୟ ଏହି ଭାବଧାରାଦ୍ୱାରା ଅନୁପ୍ରାଣିତ ହୋଇ ଥିଲେ । ତେଣୁ ମୁକ୍ତି କାମନା ଅପେକ୍ଷା ଭକ୍ତି ଶରୀର ଧାରଣ କରି ସାଧକର ଜୀବନ ଯାପନ ପାଇଁ 'ଗୀତ ଗୋବିନ୍ଦଚନ୍ଦ୍ର'ରେ ସେ ଉଦ୍‌ବୋଧନ ଦେଇଛନ୍ତି । ସେ ଯେ କେବଳ ଧର୍ମଗ୍ରନ୍ଥ ରଚନା କରିଥିଲେ ଓ ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ନାହିଁ, ଏପରି ମତ ମଧ୍ୟ ଯଥାର୍ଥ ନୁହେଁ । ଆଧ୍ୟାତ୍ମିକ ଚେତନା ଜାଗ୍ରତ ମୂଳ ଉଦ୍ଦେଶ୍ୟ ହେଲେ ମଧ୍ୟ ଭାଷା, ପ୍ରକାଶଭଙ୍ଗୀ, ଚରିତ୍ର ଚିତ୍ରଣ ଓ ସମାଜ ସଂସ୍କାର ମୂଳକ ବାସ୍ତବବାଦୀ ବର୍ଣ୍ଣନା ହେତୁ ଓଡ଼ିଆ ସାହିତ୍ୟରେ ଯଶୋବନ୍ତ ଦାସ ଜଣେ ଅବିସ୍ମରଣୀୟ କବି । ଯଶୋନ୍ତ ଦାସ ଏକାଧାରରେ ସାଧକ ଓ କବି ।

—o—